# RAMA–BANABASA

(A DRAMA.

By

**RAM SANKAR ROY**

---

# ରାମବନବାସ

## ନାଟକ ।

ଶ୍ରୀ ରାମଶଙ୍କର ରାୟ କର୍ତ୍ତୃକ ବିରଚିତ ।

ଦ୍ୱିତୀୟବାର ମୁଦ୍ରିତ ।

CUTTACK
Printed by the Cuttack Printing Company, Limited,
1914

ମୂଲ୍ୟ ଟ ୧ ( ଏକଟଙ୍କା ମାତ୍ର ।

# ଭୂମିକା

---

ବସନ୍ତପଞ୍ଚମୀ ସମୟରେ ଓଡ଼ିଶାରେ ନାଟ୍ୟାଭିନୟର ପ୍ରଥମ ସୂତ୍ରପାତ ହୋଇ କ୍ରମାଗତ ପ୍ରାୟ ସେହି ସମୟରେ ଏପର୍ଯ୍ୟନ୍ତ ନାଟ୍ୟାଭିନୟ ହୋଇ ଆସୁ-ଥିବାରୁ ସେହି ସମୟକୁ ଲକ୍ଷ କରି ଏହି ନାଟକର ପ୍ରସ୍ତାବନା ହୋଇଅଛି । ଓଡ଼ିଆନାଟ୍ୟାଭିନୟ ସନ୍ଦର୍ଶନ କରି ଲୋକେ ପୁନଃପୁନଃ ପ୍ରୀତିଲାଭ କରିଥିବା ଲେଖକର ଉତ୍ସାହର ପ୍ରଧାନକାରଣ ଏବଂ ସେହି ଉତ୍ସାହର ଫଳସ୍ୱରୂପ ଏହି ନାଟକର ଉତ୍ପତ୍ତି । ନାଟକଖଣ୍ଡିକ ରଚିତ ହେଲା ପରେ ସନ ୧୮୯୧ ମସିହା ଫେବୃୟାରିମାସ ତା ୧୮ ଓ ୨୧ ଦିନମାନଙ୍କରେ ଏହି କଟକନଗରରେ ଏବଂ ସେହି ମାସ ତା ୧୭ ଓ ୧୪ ତାରିଖମାନଙ୍କରେ କୋଠପଦା ମଠଠାରେ ଅଗ ହୋଇ ଅଭିନୀତ ହୋଇଥିଲା । ଲୋକେ ଅଭିନୟ ଦେଖି ପରମ ସନ୍ତୋଷ ଲାଭ କରିଥି-ବାରୁ ଲେଖକ ଏଥିର ମୁଦ୍ରାଙ୍କନ କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛି । ମହାକବି ବାଲ୍ମୀକି ମହର୍ଷିଙ୍କ ମହାକାବ୍ୟ ରାମାୟଣଗତ ମନ୍ଥରାଚରିତର ଏହି ଚିତ୍ର ଦେଖି ଲୋକେ ସନ୍ତୋଷ ଲାଭ କଲେ ଲେଖକ କୃତାର୍ଥ ହେବ ।

ପରିଶେଷରେ କର୍ତ୍ତବ୍ୟ ଏହିକି ଯେ ଯେଉଁ ବନ୍ଧୁମାନେ ନାଟକ ରଚନାଠାରୁ ଅଭିନୟ ଓ ମୁଦ୍ରାଙ୍କନ ହେବାପର୍ଯ୍ୟନ୍ତ ଆମ୍ଭକୁ ପୂର୍ବେ ସାହାଯ୍ୟ କରୁଥିଲେ ସେମାନେ ଏଥିରେହିଁ ଭଲେମାନ ଶିଥିଳତା ଦେଖାଇ ନ ଥିବାରୁ ଲେଖକ ସେମାନଙ୍କଠାରେ ଚିରକୃତଜ୍ଞତାପାଶରେ ବଦ୍ଧ ହୋଇ ଆନ୍ତରିକ ଧନ୍ୟବାଦ ପ୍ରଦାନ କରୁଅଛି ।

କଟକ
୨୭।୩।୯୧ } ଶ୍ରୀ ରାମଶଙ୍କର ରାୟ ।

—:o:—

## ନାଟ୍ୟୋଲ୍ଲିଖିତ ବ୍ୟକ୍ତିଗଣଙ୍କର ନାମ ।

### ପୁରୁଷ ।

ଦଶରଥ .. .. ଅଯୋଧ୍ୟାର ରାଜା ।
ରାମ ... ... ରାଜାଙ୍କ ଜ୍ୟେଷ୍ଠପୁତ୍ର ।
ଲକ୍ଷ୍ମଣ ... ... ରାଜାଙ୍କ ଦ୍ୱିତୀୟପୁତ୍ର ।
ବଶିଷ୍ଠ ... ... ରାଜଗୁରୁ ।
ବାମଦେବ ... ... ସଭାସଦ୍ ଋଷି ।
ସୁମନ୍ତ୍ର ... ... ରାଜମନ୍ତ୍ରୀ ।
ହରିହରଭଟ୍ଟ, କୃପାଚାର୍ଯ୍ୟ } ବ୍ରାହ୍ମଣଦ୍ୱୟ
ଶଙ୍କର, ଶ୍ରୀକଣ୍ଠ } ରାମଚନ୍ଦ୍ରଙ୍କ ସୁହୃଦ୍ଦ୍ୱୟ

କୃଷକଦ୍ୱୟ, ରାଜଦୂତ, ମହାନାୟକ, ଦ୍ୱାରୀ, ବିଦୂଷକ, ସଭାସଦ୍‌ବର୍ଗ, ବନ୍ଦୀଦ୍ୱୟ, ପୁରୋହିତ, ବ୍ରାହ୍ମଣ ଇତ୍ୟାଦି ।

### ସ୍ତ୍ରୀ ।

କୌଶଲ୍ୟା ... ... ଜ୍ୟେଷ୍ଠା ରାଣୀ ।
କୈକେୟୀ ... ... ମଧ୍ୟମା ରାଣୀ ।
ସୁମିତ୍ରା ... ... କନିଷ୍ଠା ରାଣୀ ।
ସୀତା ... ... ରାମଚନ୍ଦ୍ରଙ୍କ ସ୍ତ୍ରୀ ।
ଊର୍ମିଳା ... ... ଲକ୍ଷ୍ମଣଙ୍କ ସ୍ତ୍ରୀ ।
ପ୍ରମଦା ... ... ସୀତାଙ୍କ ସଖୀ ।
ସୁନନ୍ଦା ... ... ଗାୟିକା ।
ମନ୍ଥରା ... ... କୈକେୟୀର ଦାସୀ ।
ଦାସୀଦ୍ୱୟ ।

# ରାମ-ବନବାସ ।



## ପ୍ରସ୍ତାବନା ।

ଭୂଭାରହରଣାର୍ଥାୟ ମାନବାଂ ତନୁମାଶ୍ରୟନ୍ ।
ଯୋଽବତୀର୍ଣ୍ଣଃ କ୍ଷିତୌ ରାମଃ ପାତୁ ନଃ ପରମେଶ୍ୱରଃ ॥

ନାନ୍ଦ୍ୟନ୍ତେ

ସୂତ୍ରଧାର ।—ନାନ୍ଦୀର ଅତି ବାହୁଲ୍ୟରେ ପ୍ରୟୋଜନ ନାହିଁ । ଉଦ୍ୟାନ-ବନ-ଗିରି- ସୁଶୋଭନକାରୀ ଉଜ୍ଜ୍ୱଳପ୍ରଭାଶାଳୀ ଶୀତ-ଶିଶିର-ପୀଡ଼ିତ ପୃଥିବୀ-ପରିତୃପ୍ତକର ସୁଲଳିତକୋକିଳକୂଜନକାରୀ ଜଗଜ୍ଜୀବମନୋହର ବସନ୍ତର ସମାଗମ ସଙ୍ଗେ ସଙ୍ଗେ ଜଗନ୍ମାତା ବିଦ୍ୟାଦାତ୍ରୀ ଶ୍ରୀ ଶ୍ରୀ ସରସ୍ୱତୀ ଦେବୀଙ୍କ ଲୋକହିତ-କାମନାରେ ପୃଥିବୀରେ ଅବତୀର୍ଣ୍ଣ ହେବାରୁ ଆଜ ସମସ୍ତେ ତାଙ୍କର ପୂଜାରେ ବ୍ରତୀ ଥାଇ ଦିବ୍ୟସୁଖ ଭୋଗ କରୁଅଛନ୍ତି । ସେହି ଲୋକମାନଙ୍କ ମଧ୍ୟରୁ ସରସ୍ୱତୀର ବରପୁତ୍ର ବିଦ୍ୟାନୁରାଗୀ ସୁଧୀମଣ୍ଡଳୀ ଏ ସ୍ଥାନରେ ଉପସ୍ଥିତ ଥାଇ ସଭାସ୍ଥଳ ଉଜ୍ଜ୍ୱଳ କରିଅଛନ୍ତି । ଦେବତା ବିନା ଯେପରି ହତଶ୍ରୀ ଦେବାଳୟ ଶୋଭାନ ଦିଶଇ ସେହିପରି ସଭ୍ୟମାନଙ୍କ ସମାଗମ ବିନା ସଭାସ୍ଥଳ ଅନ୍ଧକାରମୟ ଦିଶୁଥାନ୍ତା ! ଉତ୍ତମ—ଆଉ ବିଳମ୍ବର ପ୍ରୟୋଜନ ନାହିଁ ।

[ ନଟୀର ପ୍ରବେଶ ।

ନଟୀ ।—[illegible]ବର ! ଆପଣ ଅଧୀନକୁ କାହିଁକି ଡକାଇଅଛନ୍ତି ?

ସୂତ୍ର ।—ଆର୍ଯ୍ୟେ ! ଦେଖୁନାହଁ ଏ ସ୍ଥାନରେ ନାଟ୍ୟରସାସ୍ୱାଦୀପଣ୍ଡିତମଣ୍ଡଳୀ ସମବେତ ହୋଇ ସଭାସ୍ଥଳ ସୁଶୋଭିତ କରିଅଛନ୍ତି ? ସଭାସ୍ଥଳ, କିପରି ସ୍ୱର୍ଗ-ପ୍ରାୟ ପ୍ରତୀୟମାନ ହେଉଛି ! ପୃଥିବୀରେ ବସନ୍ତର ଆଗମନ ସଙ୍ଗେ ସଙ୍ଗେ କରୁଣାମୟୀ ଜଗଜ୍ଜନନୀ ଶ୍ରୀ ସରସ୍ୱତୀ ଦେବୀ ଅବତୀର୍ଣ୍ଣା ହେବାରୁ ଜନମଣ୍ଡଳୀ ତାଙ୍କର ଯଥୋଚିତ ପୂଜା ଓ ଅର୍ଚ୍ଚନା କରି ଅପୂର୍ବ ଆମୋଦରେ ମତ୍ତ ଅଛନ୍ତି । ସହୃଦୟମହୋଦୟମାନେ ସେହି ବସନ୍ତପଞ୍ଚମୀର ସୁଖଯାମିନୀ ଶାନ୍ତୋ-ଚିତ, ଚିତ୍ତ-ହରଣର ନିର୍ଦ୍ଦୋଷ ଆମୋଦରେ ଅତିବାହିତ କରିବାକାରଣ ଏକତ୍ରିତ ହୋଇଛନ୍ତି । ଅସ୍ମ ଦ୍ଦେଶରେ ନାଟ୍ୟାଭିନୟ ସର୍ବଶ୍ରେଷ୍ଠ ଆମୋଦ ଅଟେ; ତାହା ଶାନ୍ତୋଚିତରୂପେ ନିର୍ଦ୍ଦୋଷରୂପେ ସମ୍ପାଦିତ

ହେଲେ ଏକପକ୍ଷରେ ଯେପରି ମଞ୍ଚରେ ଅପୂର୍ବ ଛବିମାନ ଜାତ ହୋଇ ମନକୁ ତୃପ୍ତ ଏବଂ ପବିତ୍ର କରେ ସେହିପରି ଲୋକମାନଙ୍କର ନାନାପ୍ରକାର ହିତସାଧନର ପଥ ମଧ୍ୟ ତଦ୍ୱାରା ପରିଷ୍କୃତ ହୁଅଇ । ଆମ୍ଭେ ଇଚ୍ଛା କରୁଁ ତୁମ୍ଭେ ନାଟକାଭିନୟଦ୍ୱାରା ବିଦ୍ୱଜ୍ଜନମଣ୍ଡଳୀର ତୃପ୍ତିସାଧନ କରି ଅଦ୍ୟ ରାତ୍ରର ଯଥାର୍ଥ ବ୍ୟବହାର କର ।

ନଟ ।—( କାନରେ ହାତ ଦେଇ ) ନାଟକାଭିନୟ ! ଆଉ ସେ କଥା ଆମ୍ଭକୁ କହନ୍ତୁ ନାହିଁ । ଆମ୍ଭେ ଆଉ ଓଡ଼ିଆ ଦେଶରେ ନାଟକାଭିନୟ କରିବୁ ନାହିଁ ।

ସୂତ୍ର ।—କି ଆଶ୍ଚର୍ଯ୍ୟ ! ଆର୍ଯ୍ୟ, ଏଭଳି କଥା ତୁମ୍ଭ ମୁଖରୁ କିପରି ନିର୍ଗତ ହେଲା ? ଓଡ଼ିଆ ଦେଶରେ ନାଟକାଭିନୟ କରିବାରେ ଦୋଷ କି ଅଛି ? ଓଡ଼ିଆମାନେ କି ମନୁଷ୍ୟ ନୁହନ୍ତି ?

ନଟ ।—ବନ୍ଧୁବର ! ତାହା ନୁହେ । ସାଧାରଣ ଲୋକେତ ନାଟକାଭିନୟର ମର୍ମ୍ମ ଗ୍ରହଣ କରିବାକୁ ଏକାନ୍ତ ଅକ୍ଷମ, ତହିଁରେ ପୁଣି ଶିକ୍ଷିତମ୍ମନ୍ୟ, ବାବୁର ଲୋକମାନେ କହୁଛନ୍ତି ଯେ ନାଟକାଭିନୟଦ୍ୱାରା ଅମଙ୍ଗଳ ବିନା ମଙ୍ଗଳ ନାହିଁ । ସେମାନଙ୍କର ମତ ଏହି ଯେ ଓଡ଼ିଶାରେ ନାଟକାଭିନୟ କରିବାଦ୍ୱାରା ଭବିଷ୍ୟତର ଆଶାଭରସାସ୍ୱରୂପ ଯୁବକବୃନ୍ଦର ଇହକାଳ ଓ ପରକାଳ ଉଭୟ ନଷ୍ଟ କରିବାର ସୂତ୍ରପାତ ହୋଇଛି ।

ସୂତ୍ର ।—ଆର୍ଯ୍ୟ ! ଏ କଥା ଯାହା କହିଲ ତାହା ସତ୍ୟ । କେତେକ ଶିକ୍ଷିତ-ଲୋକଙ୍କର ସେପରି ମତ ଥିବା ଆମ୍ଭକୁ ଜଣାଅଛି । ମାତ୍ର ଗୀତ-ବାଦ୍ୟ-ଦ୍ୱାରା ଲୋକ ନଷ୍ଟ ହୁଏ ବୋଲି ଯେଉଁ ଦେଶରେ ତହିଁର ଚର୍ଚ୍ଚା ଜଣା ପଡ଼ୁଛି ସେ ଦେଶରେ ଏଭଳି ମତ ଥିବା ଆଶ୍ଚର୍ଯ୍ୟର ବିଷୟ ନୁହଇ । ଏଥିରେ ତୁମ୍ଭର କିମ୍ବା ଆମ୍ଭର ଦୋଷ ନାହିଁ । ପରାଧୀନ ଦେଶରେ ଏହିଭଳି ଘଟିଥାଏ । ଯାହାହେଉ ଆମ୍ଭର ସମ୍ପୂର୍ଣ୍ଣ ଭରସା ଅଛି ଯେ ଏ ଭ୍ରମଟିକ ଶୀଘ୍ର ଅପନୋଦିତ ହେବ । ଅଧିକାଂଶ ଲୋକେ ତୁମ୍ଭର ପକ୍ଷ ସମର୍ଥନ କରିବା ଦେଖାଯାଏ, ସୁତରାଂ ସେଭଳି କେତେକ ଲୋକଙ୍କ କଥାକୁ ଧରି ବସିବା ଉଚିତ ନୁହେ । ନାଟକାଭିନୟ ଯେ ଓଡ଼ିଶାପ୍ରତି ଗୋଟିଏ ନୂତନ କାଣ୍ଡ ଏହା କି ତୁମ୍ଭଙ୍କୁ ସ୍ପଷ୍ଟ କହିବାକୁ ହେବ ? ଗୋଟିଏ ନୂତନ କାର୍ଯ୍ୟର ସୂତ୍ରପାତ କଲେ ତାହା ଭଲ ହେଉ ପଛକେ ଅକାରଣ କେତେ ପରିହାସ, କେତେ ବିଦ୍ରୂପ, କେତେ ଲଜ୍ଜା ସହିବାକୁ ପଡ଼େ ଏହାକି ତୁମ୍ଭକୁ ଜଣା ନାହିଁ ? ନା ଭୂମଣ୍ଡଳର ଇତିହାସପୃଷ୍ଠାରେ

ଦେଖି ନାହଁ ? ସେ ସବୁ କଥା ଧରି ବସିଲେ ଗୋଟିଏ ମହତ୍ ଉଦ୍ୟମ ଯେ ନଷ୍ଟ ହେବ ଏମନ୍ତ ନୁହେ, ତୁମ୍ଭେ ଦେଶରୁ ଗୋଟିଏ ମହତ୍ ଉନ୍ନତିଥିରୁ ବଞ୍ଚିତ କରିବ ।—ଏଣୁ ମନରୁ ସେ ଭାବ ଦୂର କରି ପରମେଶ୍ୱରଙ୍କୁ ଡାକି କାର୍ଯ୍ୟରେ ଲାଗିଯାଅ, ଦେଖିବ ତୁମ୍ଭଙ୍କୁ ଯେଉଁମାନେ ଦୋଷ ଦେଉଛନ୍ତି ସେହିମାନେ ପୁଣି କେତେ ଆଦର କରିବେ ।

ନଟ ।—ତଥାସ୍ତୁ ବନ୍ଧୁବର ! କଥା ଧରି ବସିବା ଆମ୍ଭର କାର୍ଯ୍ୟ ନୁହେ ତେବେ ଦେଶର ଅବସ୍ଥା ଦେଖି ଦୁଃଖ ପ୍ରକାଶ କଲି, ଏତିକି । ଯାହାହେଉ ଆପଣଙ୍କର ଆଶ୍ୱାସବାକ୍ୟ ଆମ୍ଭର ଦ୍ୱିଗୁଣ ବଳବୃଦ୍ଧି କଲା ।

ସୂତ୍ର ।—କିଛି ଭୟ ନାହିଁ । ତୁମ୍ଭେ ଈଶ୍ୱରଙ୍କୁ ଡାକି କାର୍ଯ୍ୟାରମ୍ଭ କର ।—ଜାଣିଛ କେଉଁ ନାଟକ ଅଭିନୟ କରିବ ?

ନଟ ।—ଭ୍ରମବନବାସ ?—ବନ୍ଧୁବର ! ସେ ନାଟକଦ୍ୱାରା ଏଭଳି ପଣ୍ଡିତରତ୍ନସମାଲଙ୍କୃତା ସଭାର ମର୍ଯ୍ୟାଦା ରକ୍ଷା ହେବଟିକି ?

ସୂତ୍ର ।—ସେ ଆଶଙ୍କା କରିବାର ପ୍ରୟୋଜନ ନାହିଁ । ସୂର୍ଯ୍ୟ ଯେପରି ସମୁଦ୍ରଗର୍ଭରୁ ରସ ଗ୍ରହଣ କରି ଲବଣଭାଗ ତ୍ୟାଗ କରନ୍ତି, ସେହିପରି ପଣ୍ଡିତମାନେ ଗୁଣଭାଗ ଗ୍ରହଣ କରି ଦୋଷଭାଗ ତ୍ୟାଗ କରନ୍ତି । ଯେତେବେଳେ ତୁମ୍ଭେ ପଣ୍ଡିତମାନଙ୍କ ସମ୍ମୁଖରେ ଠିଆହୋଇଛ ସେତେବେଳେ ସେ ବିଷୟରେ ଲେଶମାତ୍ର ଦ୍ୱିଧା କରିବା ଉଚିତ ନୁହେ । ଜଗଦୀଶ୍ୱର ତୁମ୍ଭର ଶ୍ରମ ସଫଳ କରନ୍ତୁ ।

[ ସୂତ୍ରଧାରର ପ୍ରସ୍ଥାନ ।

ନଟ ।—( ସ୍ୱଗତ ) ସୂତ୍ରଧାରତ ଭଲ ବ୍ୟାପାରରେ ମୋତେ ଲଗାଇ ଦେଇଗଲେ । ଆମ୍ଭେ କି ଏହି ଦୁଷ୍କର ବ୍ୟାପାର ନିର୍ବିଘ୍ନରେ ସମାପ୍ତ କରି ଏତାଦୃଶ ସଜ୍ଜନମାନଙ୍କୁ ଆପ୍ୟାୟିତ କରିପାରିବୁଁ ? ଏଣୁ ଜଗଦୀଶ୍ୱରଙ୍କ ସହାୟ ବିନା ତାହା କଦାପି ହୋଇ ନ ପାରେ ।—( ଗୀତ )

ରାଗିଣୀ ବସନ୍ତ—ତାଳ ଆଡ଼ାଠେକା ।

କୃପା କର ଭଗବାନ ଡାକେ ଦୀନ ଦୀନଭାବେ ।
କୃପାମୟ ନାମ ତବ କୃପଣ ନୁହ ଏଠାବେ ॥
ମୂଢ଼ କରି ଉଦ୍ଧାର, ପାଳ ପ୍ରଭୁ ନିରନ୍ତର ;
ସହାୟ ସମ୍ବଳ ଏକା ଆପେ ଜଗଦୀଶ ଭବେ ॥ ୧ ॥
ପ୍ରଭୋ ତବ ନାମ ଧରି, ଚଳାଉଛି ଆଜ ତରି—
ପୂରାଅ ଭକତ-କାମ ସୁଖେ ପାରିକରି ମାଧବେ ॥ ୨ ॥

( କ୍ଷଣକାଳ ନିସ୍ତବ୍ଧ ଥାଇ ) ନା— ଭୟ କରିବାର କୌଣସି କାରଣ ନାହିଁ । ସଂସାରଶୃଙ୍ଖଳରୁ ମୁକ୍ତ ହୋଇଯିବା ନିମିତ୍ତ ଯେଉଁ ହରିନାମ ଭେଳା-ସ୍ୱରୂପ ଏ ଭବ ଦୁସ୍ତରକାର୍ଯ୍ୟରୁ ମଧ୍ୟ ତାହାଦ୍ୱାରା ଅନାୟାସରେ ଉଦ୍ଧାର ଲାଭ ହେବ । ଦେଖାଯାଉ ପ୍ରେୟସୀଙ୍କର ଅଭିମତ କଣ ?

[ ଗୀତ ଗାଉଁ ଗାଉଁ ନଟୀର ପ୍ରବେଶ ।

ନଟୀ ।—( ଗୀତ ) ରାଗିଣୀ ବସନ୍ତବାହାର—ତାଳ ଏକତାଳୀ ।

ଆଇଲା ବସନ୍ତ ବାହାର ।

କରେ ଆଲିଙ୍ଗନ ଧରା ହୃଷ୍ଟମନ
[illegible] ଶୋଭା ସାର ସାର । ଘୋ ।
ବନ ଉପବନ ଆମୋଦିତ କରି ଫୁଟିଛି ପ୍ରସୂନ ତରୁବନ ଭରି,
ତହିଁ କୁହୁସ୍ୱର କଳ-ମନୋହର କୋକିଳ-ଗଣ ବାର ବାର । ୧ ।
ଭୃଙ୍ଗ ମୁକୁନ୍ଦର ଅଶେଷ ପ୍ରକାର କୂଜନ କରେ ବିହଙ୍ଗନିକର,
ମଳୟସମୀର ବହେ ଅନିବାର ଚନ୍ଦନବନ ପାର ପାର । ୨ ।
ଦେଖ ଦେଖ ଶୋଭା ପ୍ରେମର ପସରା କେତେରୂପେ ଭବେ ପ୍ରକାଶ ପାଇଲା,
ଜଗତ୍‌ବ୍ୟାପି ପ୍ରେମ ଜଗତ-କଲ୍ୟାଣ ଗୁଞ୍ଜେ ଭ୍ରମର ମାଳ ମାଳ ॥ ୩ ॥

ନଟ ।—ପ୍ରିୟେ ! ଏ ସୁଲଳିତ ସ୍ୱର, ଏ ସୁଠାମ ଭଙ୍ଗୀ, ଏ ଦିବ୍ୟ ସୌନ୍ଦର୍ଯ୍ୟ ଏ ଭାବଗ୍ରହଣଶୀଳତା ଏବଂ ଏ ପାଣ୍ଡିତ୍ୟ ଏକତ୍ରିତ ନୋହିଥିଲେ କି ଅମ୍ଭେ ତୁମ୍ଭଠାରେ ଏତେ ମୁଗ୍ଧ ହୋଇଥାନ୍ତୁ ! ପ୍ରିୟେ ! ଏହି ବସନ୍ତ ଓ ପ୍ରେମ ଯେବେ ଭୂଲ ରହିଥିବ ତା ଅମ୍ଭଙ୍କୁ ବିପଦରୁ ଉଦ୍ଧାର କରିବାର ଚେଷ୍ଟା କରିବ ?

ନଟୀ ।—ଆର୍ଯ୍ୟପୁତ୍ର ! ତୁମ୍ଭର ବିପଦ ! ଅମ୍ଭେ ଯେଉଁ ବସନ୍ତ ଓ ପ୍ରେମରେ ଭୂଲି ରହିଥାଉଁ ସେ ବସନ୍ତ ଓ ପ୍ରେମ କିବ ତୁମ୍ଭେ ଦନପାର କର ! ତୁମ୍ଭର କି ବିପଦ ? ତୁମ୍ଭର ବିପତ୍ତିକାଳରେ ଅଧୀନୀ ନିକଟରୁ ବସନ୍ତ କି ପ୍ରେମ ସାହସ କରି ଅସିପାରେ କି ?

ନଟ ।—ପ୍ରିୟେ ! ଯେଉଁ ବସନ୍ତରେ ତୁମ୍ଭେ ମୋହିତା, ଯେଉଁ ବସନ୍ତ ଅମୃତ ଜୀବନ୍ତା ଏବଂ ଯେଉଁ ବସନ୍ତ ସ୍ୱର୍ଗରୁ ଦେବଙ୍କି ଭୂଜାଇ ଆଣି ଏ ସନ୍ନ୍ୟସ୍ତଳ ଉଚଳା କରିଛି, ସେହି ବସନ୍ତ ଅମ୍ଭଙ୍କୁ ବିପଦରେ ପକାଉଛି—ତୁମ୍ଭେ ସହାୟ ନ ହେଲେ ଅମ୍ଭେ ଏଥୁ ଉଦ୍ଧରି ପାରିବୁଁ ନାହିଁ ।

ନଟୀ ।—ଆର୍ଯ୍ୟପୁତ୍ର ! ତୁମ୍ଭର ସହାୟ ହେବାକୁ ଅନ୍ତର ପ୍ରାର୍ଥନା କରୁଛ ? ଯେବେ ଏପରି କଥା ହେବାର କଥା ଥିଲା ତେବେ ସୁଁ କହିଥିଲେତ ଅମ୍ଭେ ଏଠାକୁ

ଆସି ନ ଥାନ୍ତୁ ।—ପ୍ରିୟତମ ! ବାୟୁ ଯେପରି ବସନ୍ତର ଅନୁଗମନ କରେ ଆମ୍ଭେ କି ତଦ୍ରୂପ ତୁମ୍ଭର ଅନୁଗମନ ନ କରୁଁ କି ସେରୂପ ତୁମ୍ଭର ସହାୟ ନୋହୁଁ ?—କି ବିପଦ ଉପସ୍ଥିତ ?

ନଟ ।—ବିପଦ ଆଉ କଣ—ଦେଖୁଛତ ଏ ଅପୂର୍ବ ସଭାସ୍ଥଳ ନାନା. ଦେଶ-ବିଦେଶାଗତ ଗୁଣଗ୍ରାହୀ ସୁଧୀମଣ୍ଡଳରେ ସୁଶୋଭିତ ହୋଇ ରହିଛି ! ଏହି ଅପୂର୍ବସଭାର ମର୍ଯ୍ୟାଦା ରକ୍ଷା କରି ନାଟକାଭିନୟଦ୍ୱାରା ସଭ୍ୟମାନଙ୍କର ସନ୍ତୋଷବିଧାନ କରିବାକୁ ହେବ । ତୁମ୍ଭେ ସହାୟ ନ ହେଲେ ଆମ୍ଭେ ଏକାକୀ କାର୍ଯ୍ୟସମାଧା କରିପାରିବୁଁ ନାହିଁ ।

ନଟୀ ।—ଏହି କଥା ? ଏଥିକି ଏତେ ଚିନ୍ତିତ କାହିଁକି ? ଆମ୍ଭଦ୍ୱାରା ଯଦି ଏପରି ସୁଧୀମାନଙ୍କ କିଞ୍ଚିତ୍ମାତ୍ର ସୁଖକରକାର୍ଯ୍ୟ ସମ୍ପାଦିତ ହୋଇପାରେ ତହିଁ କି ଅବଳା ଲେଶମାତ୍ର କୁଣ୍ଠିତା ନୁହେ ।—ପ୍ରିୟତମ ! କେଉଁ ନାଟକର ଅଭିନୟ କରିବାର ମନସ୍ଥ କରିଛ ?

ନଟ ।—ପ୍ରିୟତମେ ! ଏହି ଗୁଣ ନିମିତ୍ତ ତୁମ୍ଭେ ଅଶେଷ ଧନ୍ୟବାଦର ପାତ୍ରୀ । ଅବଳାର ସାହସ ଯାହା ଅନ୍ୟଠାରେ ନାହିଁ !—ପ୍ରିୟେ ! ଆମ୍ଭେ ମନସ୍ଥ କରିଛୁଁ ସେହି ରାମବନବାସ ନାଟକର ଅଭିନୟ କରିବୁଁ ।—କେମନ୍ତ ଏ ସଭାକୁ ତାହା ସେନେଇବଟିକ ?

ନଟୀ ।—ସେଥିରେ ସନ୍ଦେହ ନାହିଁ । ମହାକବି ବାଲ୍ମୀକି ଋଷିଙ୍କର ଉସମସ୍ତ ଲେଖନୀବିନିଃସୃତ ଯେଉଁ ରାମାୟଣ ଅଦ୍ୟାପି ଲୋକଙ୍କୁ ନାନାରସର ପରାକାଷ୍ଠା ଆସ୍ୱାଦନ କରାଇ ମୋହିତ କରୁଛି, ସେଥିର ସାରଭାଗ ସର୍ବଗୁଣାଳଙ୍କୃତ ସର୍ବଲୋକାଭିରାମ ଶ୍ରୀ ରାମଚନ୍ଦ୍ରଙ୍କର ଅଭିଷେକର ଉଦ୍ଯୋଗ ହେଉଁ ହେଉଁ ବନଗମନର କ୍ରିୟା ସେହି ନାଟକରେ ବର୍ଣ୍ଣିତ ହୋଇଛି—ନାଟ୍ୟାଭିନୟ ଦେଖିବ ଥାଉ କେବଳ ନାମ ଶୁଣିଲେ ସଭ୍ୟମାନେ ମୋହିତ ହୋଇଯିବେ ;

ନଟ ।—ଧନ୍ୟ ତୁମ୍ଭର ସାହସ !—ଏବେ ବୁଝିଲି ଆଉ ସାହାଯ୍ୟର ପ୍ରାର୍ଥନା କରିବାକୁ ହେବ ନାହିଁ । ଧୀର ଶାନ୍ତ ଜିତେନ୍ଦ୍ରିୟ ସତ୍ୟବାଦୀ ନାରାୟଣାବତାର ଶ୍ରୀ ରାମଚନ୍ଦ୍ର ଚକ୍ରବର୍ତ୍ତୀ ଜଳଦପ୍ରାୟ ସର୍ବଲୋକପ୍ରିୟ ଥିଲେ ଏବଂ ସର୍ବଜୀବରେ ତାଙ୍କର ଦୟା ଦେଖା ଯାଉଥିଲା । ଯମ ଏବଂ ଇନ୍ଦ୍ର ପ୍ରାୟ ତାଙ୍କର ବଳ, ବୃହସ୍ପତି ପ୍ରାୟ ତାଙ୍କର ବୁଦ୍ଧି ଏବଂ ପର୍ବତ ପ୍ରାୟ ତାଙ୍କର ଧୈର୍ଯ୍ୟ । ଯେତେବେଳେ ନାନାବିଧ କୁସୁମସମାଳିଙ୍କର ପଦ୍ମ ଚୈତ୍ରମାସ

ଉପସ୍ଥିତ ହୋଇ ଅଯୋଧ୍ୟା ନାହିଁତ ସମସ୍ତ ଶ୍ମଶାନଭୂମିବ ଦେଖାଉଥିଲା ସେତେବେଳେ ସେହି ଲୋକଶ୍ରେଷ୍ଠ ବୀରପୁରୁଷଙ୍କର ଅଭିଷେକ ପରି-ବର୍ତ୍ତରେ ବନବାସରେ ନିଯୁକ୍ତ ହେବାର କଥା ପ୍ରସ୍ତରବତ୍ କଠିନ ମନକୁ ମଧ୍ୟ ତରଳାଇ ଦେବ । ସେ କାରୁଣ୍ୟରସବିମିଶ୍ରିତ ଗୀତଧାରା ଶ୍ରୋ-ତୃଲୋକେ ଅମୃତ ପ୍ରାୟ ଶ୍ରବଣଯୁଗେ ପାନ କରୁଥିବେ ।—ଅତଏବ ଆଉ ବିଳମ୍ବର ପ୍ରୟୋଜନ ନାହିଁ ।

[ ନଟ ଓ ନଟୀ ଉଭୟଙ୍କର ଗୀତ ]

ରାଗିଣୀ ପରଜବାହାର—ତାଳ ଏକତାଳି ।

ଜୟ ରାମ ରଘୁକୁଳତିଳକ ।
ଦୀନପାଳକ ସୀତାନାୟକ । ପଦ ।

ପୂର୍ଣ୍ଣବ୍ରହ୍ମ ଅବତାର ତ୍ରେତାଯୁଗେ ରଘୁକୁଳ
ଦୁଷ୍ଟ ରାବଣ ନାଶେ ।
ନାହିଲେ ଏ ସଙ୍ଗେ
ଲୋକହେତୁ ଯେତେ ଦୁଃଖ ଭୁଞ୍ଜିଲେ ନାଳକ ! ୧ ।

ବାଲକାଳେ ଦୈତ୍ୟ ମାରି ଅହଲ୍ୟା ଉଦ୍ଧାର କରି
ହରଧନୁ ଭାଙ୍ଗିଲେ ।
ରାଜ୍ୟସୁଜନ ତ୍ୟଜି ବହନ
ପିତୃସତ୍ୟ ପାଳି ଗଲେ ଗହନ କାନନ ! ୨ ।

ରାବଣାଦି ଦୈତ୍ୟ ମାରି ଅକ୍ଷୟ କୀର୍ତ୍ତି ବିସ୍ତାରି
ସେତୁବନ୍ଧ ବନ୍ଧାଇ ।
ଅଧ୍ୟାପକଙ୍କ ପୂଜ ମୁକ୍ତି—
ପଥ ପ୍ରକାଶ କଲେ ସେ ହିଂସାରପାଳକ । ୩ ।

ଶାନ୍ତ ଦାନ୍ତ ଧୀର ବୀର ପରହିତେ ସଦା ସ୍ଥିର
ଦୀନ-ଦୁଃଖୀ-ସହାୟ
ଅଧର୍ମ— ତାରଣ
ତୁଅ ସହାୟ ହେବ ସେ ଅନନ୍ୟ ସାୟକ । ୪ ।

# ପ୍ରଥମାଭିନୟ ।

ପ୍ରଥମଦୃଶ୍ୟ ।—ଅଯୋଧ୍ୟାରାଜମାର୍ଗସ୍ଥ ବୃକ୍ଷବେଦୀ ।

[ ହରଧରଭଟ୍ଟ ଓ କୃପାଚାର୍ଯ୍ୟ ଆସୀନ । ]

ହର ।—ଆରେ ତୁ ପିଲାଲୋକ—ନ ଜାଣୁ ଯେବେ ଆମ୍ଭଠୁ ଶିଖି ତାହାରଲୁ ପଣ୍ଡିତ ବୋଲା ।

କୃପ ।—ନାହିଁକ ଭଟ୍ଟେ, ଏଡ଼େବଡ଼ କଥାଟାଏ କହଲ ଯେ ?

ହର ।—ଆରେ ତୋର ବାପ ହୃଷୀକେଶ ମଲା ବେଳେକ ପଣ୍ଡା ବୋଲାଉଥିଲା—ତୁ ତାହାର ପୁଅ ନା—ଶାସ୍ତ୍ର ଶୁରଖଣ୍ଡ ପଢ଼ି ଆଚାର୍ଯ୍ୟ ବୋଲାଉଛୁ—ଆମ୍ଭର ଭଜନାଳ ଏହ ବନ୍ଦନାରେ ଉଭୁଭି ଗଲାଣି—ତୁ ଆଜ ଆମ୍ଭଙ୍କୁ ପାଠ ପଢ଼େଇବାକୁ ଆସିଛୁ ?

କୃପ ।—ଯା ବୋଲ ତ ତାହାର ଭୁଲ ହୁଏ ନାହିଁ—ମୁନୀନାଞ୍ଚ ମତି-ଭ୍ରମଃ ।

ହର ।—ହିଁ—ତ ସେଥି ଚେଁତେଚେଁଲେ ମାନଲୁ ନାହିଁ—ଆମ୍ଭେ ଯାହା କରଛୁ ଠିକ୍ ଯା ବୋଲ କର ଅହଂମନ୍ୟପଣିଆ ବାହାରୁଥିଲା ନାହିଁକ ? ଆମ୍ଭେ ରାଜା ଦଶରଥଙ୍କ ସଭାମଣ୍ଡପରେ ଆଗେ ଆସନ ପାଉ—ତୁମ୍ଭେମାନେ ଯେବେ ଆମ୍ଭଙ୍କୁ ହତାଦର କରବ ତେବେ ପୃଥିବୀ ପ୍ରଳୟ ନ ହେଲା ନାହିଁକ !

କୃପ ।—ହଉ ମୋର ନାଉଳ—ରବ ଦ୍ୱାଦଶସ୍ଥାନରେ ଠିକ ।

[କୃଷ୍ଣଚନ୍ଦ୍ରସୁର ଲଙ୍ଗଳ, ସୁଆନ, ଛଣସହତ ପ୍ରବେଶ ଓ ବେଦୀ ତଳେ ଦଣ୍ଡାୟମାନ ।—

କୃଷ୍ଣଚନ୍ଦ୍ରସୁ ।—ଗୋସେଇଁ ଓଳଗ ।

ହର ।—ସର୍ବାପଦଶାନ୍ତିରସ୍ତୁ ।

କୃପ ।—ଦୀର୍ଘାୟୁରସ୍ତୁ ।

ପ୍ର ।—ଗୋସେଇଁମାନେ ଏମନେ କଣ ଲଗେଇଛନ୍ତି ନାହିଁକ ?

ଦ୍ୱି ।—( ଭୃକ କର ) ଆରେ ହୃଦ—ଯା ଫେର ପଶୁରନ୍ତି—ପାଠ ପଢ଼ିଲେ ସେହପର ହୁଏ । ଆମ ଗାଁ ବନମଣ୍ଡଳୁ ଦେଖି ନାହୁଁ ?

ପ୍ର ।—ନାହିଁକ ସେ ପାଠଗୁଡ଼ାକ ପଢ଼ିଲ ?—ଅମେ ନ ପଢ଼ିକର ନେବେ କଦବା ଦନ ଲାଗେ ! ଗୋସେଇଁମାନଙ୍କ ପଢ଼ାଶୁଣାପାଇଁ କଥାକଥାକେ ଦନ ।

ହର ।—ଦେଖ ଆସିଲେ ଏବେ ଗୋସେଇଁ ଗୋସେଇଁ—ଯାଙ୍କ ବାପଦାଦାଙ୍କ ଗୋସେଇଁ, ଯାଙ୍କ ପଣଅଜାଙ୍କ ଗୋସେଇଁ—ଗୋସେଇଁ ଗୋସେଇଁ—ଏଥିରେ କହବାକୁ ପାଟି ସୋର ହୋଇ ଯାଉଛୁ !

ପ୍ର ।—ହଁ ପଣ୍ଡିତେ—ଅମେ ତପାଲୋକ ଭୁଲିଗଲୁଁ ।—'ଚଷା କ ଜାଣେ ପଖାଳ
କଥା ପଡ଼ିଲେ ବୋଲେ କଣ'—ସେମନ୍ତ ।

ଦ୍ୱି ।—ବୋପେର ଗୁଲମ—ନାହିଁ କି ବୁଝୁଛ ଗାଡ଼ଖାଇବାପାଇଁ କଥାଟାଏ କହି-
କହିଲୁ ? ଅଣ୍ଡାବେଳେ କହୁଥାଉ ତ ଏକାପରକାର ହୋଇଥାନ୍ତା—ସେ
ଆପଣା ଛାତରେ ହାଥ ଦେଇ ରହନ୍ତେ ଦେଖୁ ନାହୁଁ ?

କୃପ ।—ଆରେ ଥିବୁ ଥୁଅ ଗୋଟାଏ ପାଠ ପଢ଼ୁଛୁ ।

ପ୍ର ।—କି ପାଠ ଗୋସେଇଁ ? ଆମେ କଣ ଶୁଣିବୁ ନାହିଁ ?

ଦ୍ୱି ।—ଆରେ ଅ—ମ, ସେତ ପାଠ ସେନ ନାରଦ—ତୁ କଣ ଆଉ ତା ଶୁଣି
କନ୍ଦନ୍ଥୁଡ଼ା ହେବୁ ?

ପ୍ର ।—ଇହ ଇହ ଏମନ୍ତେ ଉଛୁଳ ନାହିଁକି ହଉଚୁ—ଦେଖିକରି ଯିବା ।—
ଗୋସେଇଁ କାହା କାରକ ଦେଖୁଚ ?

କୃପ ।—ଆରେ ଏ ଆମ ଦଶରଥଙ୍କାଙ୍କର ଦଶା ଦେଖା ଯାଉଛୁ—ବୁଝିଲ ?

ପ୍ର ।—କାହିଁକ ?

କବି ।—ତ ତୋ ବାପର କ ଗଲା ? ଶୁଣିବାକୁ ଇଚ୍ଛା ଥାଏ ତ ଶୁଣ ନୋହିଲେ
ଆପଣା ବାଟ ଦେଖ—ସ୍ୱେ ଆଇଲେ ଅମକୁ କାରଣ ପଚାରିବାକୁ !

ଦ୍ୱି ।—( ପ୍ରଥମ କୃଷକର ହାତ ଧରି ) ବୋପେର ଆ ମ—ବୁଝିଛ ନାହିଁକି
ସେ ରାସ୍ତୁଅ ଗୋସେଇଁଠୁ ଗାଡ଼ଖାଇବାକୁ ଡିଅ ଦେଉଛୁ ।—ମୁଁ ଯାଉଛୁ
( ଗମନୋଦ୍ୟତ )

ପ୍ର ।—ଇଃ ଇଃ—ପାଠଟା ଶୁଣିଯିବା—ସେ ପଣ୍ଡିତଗୋସେଇଁ ଗାଡ଼ଦେ-
ଲେତ କ ଭାସିଗଲା ? ଆମ ରାଜାଙ୍କ କାତକ ପଢ଼ୁଛ—ବଲଡ଼ାଗର କଷ୍ଟ
ନାହିଁ—ଟିକେ ଠିଆହ ।

କୃପ ।—ଦଶରଥ ରାଜାଙ୍କୁ ବର୍ତ୍ତମାନ ରବ ହେଉଛନ୍ତି ଦ୍ୱାଦଶ ।

ପ୍ର ।—ତାର ଫଲ କଣ ?

କବି ।—"ଦ୍ରବ୍ୟନାଶନକରୀ ମହାପଦଂ ଯଚ୍ଛତି ବ୍ୟସ୍ତଗତୋ ଦିବାକରଃ"—
ଅର୍ଥାତ୍ କଣ ନା ରବି ଦ୍ୱାଦଶସ୍ଥାନରେ ରହିଲେ ମନୁଷ୍ୟର ସମ୍ପତ୍ତି ନଷ୍ଟ
ହୋଇ ସୋଉଠର ବିପଦ ଉପସ୍ଥିତ ହୁଏ ।

ପ୍ର ।—( କାନରେ ହାତ ଦେଇ ଜିହ୍ୱା ଦଂଶନ କରି ) ଓହୋ ! କଥଣ
କହୁଚ ଗୋସେଇଁ—ରାଜାଙ୍କ ବିପଦ ହେଲେ କି ପ୍ରଜାଙ୍କର ଆଉ ସୁଖ
ଥାଏ ?—ଆମେ ଛୁଆଛୁଆମାନେ ତ ମଲୁଁ । ରାଜା ଦଶରଥଙ୍କୁ ଏପରି
କାହିଁକି ଦଶା ହେଲା !

ନୃପ ।—ଅଚ୍ଛା ମଙ୍ଗଳ ଗ୍ରହର ସ୍ଥିତି ଦେଖାଯାଉ ।—( ଖଡ଼ି ଦେଖି ) ସ, ସ, ସେହି ତ ପଞ୍ଚମସ୍ଥାନରେ ରହିଛନ୍ତି !

ପ୍ର ।—ତାର ଫଳ ?

ଦୈ ।—"ଅରିଭୟଜ୍ଜରଃ ପାତାଲେସ୍ଥିତେ କ୍ଷୀଣୋଭି ତ ପଞ୍ଚମଃ ଉପୁତ୍ରହଗତୋ ଧନ୍ତେ ନତ୍ତଂ ଶୁଭଂ ମଦନସ୍ଥିତଃ" ।—ମଙ୍ଗଳ ପଞ୍ଚମ ହେଲେ ପ୍ରାଣନାଶ ହୁଅଇ ।

ପ୍ର ।—( ଯୁଆଡ଼ ଉନ୍ମାଦ କଲେ ଥୋଇ ମଣ୍ଡରେ ହାତ ଦେଇ ) କଣ କହୁଛ ଗୋସେଇଁ ! ଏ କି ପ୍ରମାଦ କାଳ ପଡ଼ିଲା ଆସି ! ଆଉ ଆମର ବଳକୁ ଯାଇଁ ଫଳ କଣ ? ହୁଡ଼ାକୁ ଛାଡ଼ିଦେଲେ କଟ ଛିଡ଼ିଯିବ ।

ଦୈ ।—ଶନି କେଉଁସ୍ଥାନରେ ରହିଲେଟି ?

ନୃପ ।—( ଖଡ଼ି ଗଣି ) ଶନି ?—ଅଷ୍ଟମ ।

ଦୈ ।—କଣ ?

ପ୍ର ।—କଣ କଣ, ଗୋସେଇଁ, ତାର ଫଳ କଣ ?

ଦୈ ।—ଫଳ ତୋର ମୁଣ୍ଡ—

ଜନ୍ମାଲ୍ୟପଞ୍ଚବସୁରନ୍ଧ୍ରନବଦ୍ୱିସପ୍ତଚକ୍ରଶୌ ସ୍ଥିତୋ ଯଦ ଭବେଦସୁରଃ କଦାପି ।
ଅର୍ଥକ୍ଷୟଂ ରିପୁଭୟଂ ବନ୍ଧୁକାର୍ଯ୍ୟହାନିଂ ରୋଗପ୍ରବାସମରଣାଗ୍ନିଭୟଂ କରୋତି

—ଶନି ଅଷ୍ଟମ ହେଲେ ଅର୍ଥକ୍ଷୟ, ଶତ୍ରୁଭୟ, କାର୍ଯ୍ୟହାନି, ରୋଗ, ଅଗ୍ନିଭୟ ଓ ମୃତ୍ୟୁ ଏହି ସବୁ ହୋଇଥାଏ ।

ନୃପ ।—ରବି, ମଙ୍ଗଳ ଓ ଶନି ଏ ତିନି ଦାରୁଣଗ୍ରହ ଜନ୍ମନକ୍ଷତ୍ରକୁ ଆକ୍ରମଣ କଲେ ରାଜା ବିପଦଗ୍ରସ୍ତ ଏମନ୍ତ କି ତାଙ୍କର ମୃତ୍ୟୁପର୍ଯ୍ୟନ୍ତ ସମ୍ଭବପର ।

ପ୍ର ।—ଓହୋ ! ଶ୍ରୀ ରାମଚନ୍ଦ୍ରଙ୍କ ପିତାଙ୍କୁ ବର୍ତ୍ତମାନ ଏ ଦୁର୍ଦ୍ଦଶାର କାଳ ପଡ଼ିଲା ଆସି !—ଅମେମାନେ ଗଁ ଗ୍ରସିଲୁଁ ।—ଗୋସେଇଁ ଖଡ଼ି ଠିକ ପକେଇଛନ୍ତିତ ?

ଦୈ ।—( କ୍ରୋଧେ ) ତୋ ବାପଦାଦା ଅମଳରେ ତୋ ଚଉଦପୁରୁଷରେ କେହି ଆମ ଖଡ଼ି ନାଁ ଧରିଥିଲା କି ?—ତୋର ଏଡ଼େବଡ଼ ହିମ୍ମତ—ତୁ ଆମ ଖଡ଼ିଶୁଦ୍ଧି କଥା ପଚାରୁଛୁ ?

ପ୍ର ।—ପଣ୍ଡିତେ ମୋର ହାରିଲି । ମୁଁ ଗୋସେଇଁଙ୍କ ଗୋଡ଼ ଧରୁଛି—ଗାଳି ଦେଇଲୁ ପଛକେ, ଅଭିଶାପ ଦେବେ ନାହିଁ । ଅମେ ତଣ୍ଟାଳୋକ—ତଣ୍ଟା କ ଜାଣେ ପଇଡ଼ପାଣି—ପିଇଲେ ବୋଲେ ଶୁଦ୍ଧଭୋଗଣି ।

ହର ।—ଆଶ୍ଚର୍ଯ୍ୟ !—ଚାଲ; ଏସ୍ଥାନରୁ ଚାଲିଯିବା ଉଚିତ—ଏଠି ବସିଲୁ ଏ ଶୂଦ୍ରଙ୍କଠାରୁ ପଦେ ଶୁଣିବାକୁ ହେଲା ।

[ ହର ଓ କୃପର ପ୍ରସ୍ଥାନ ।

ଦ୍ୱି ।—ବୋପେର ! ମିଛକଥା—ଆମ ରଜାଙ୍କ ଏଭଳ ଦଶା କି ଘଟିଥାଏ ?

ପ୍ର ।—ବାଭେ ! ତୁ ଏମନ୍ତେ ପିଲାଙ୍କପର କାହିଁକି କହୁଚୁ—ସେ ପଣ୍ଡିତେ ଟିକେ—ସେ କି ମିଛକର ଖଡ଼ ପକାଉଥିଲେ ?

ଦ୍ୱି ।—ବୋପେର ! କଣ ଆଉ ସେକାଳ ଅଛି ? ଏବେ ଏ ଜ୍ୟୋତିଷପଣ୍ଡିତଙ୍କୁ ଦଶରେ କଏ ? ଯଉଁଟା ଟିକେ ବେଶାଇଶାଳର ହାତ୍ରିଭିତରେ ସୂର୍ଯ୍ୟଙ୍କୁ ବାନ୍ଧ ରଖିଚ ବୋଲି ବୋଲାଏ ସେଇଟାକୁ ଗୃହଦାନ ସ୍ତ୍ରୀଚ ମିଳେ,—ବୋପେର ! ସଙ୍ଖ୍ୟାକ ଜଉଁଭଣେ ଖାଇ ଭଣ୍ଡି ଖାଉଚନ୍ତି ପରା !

ପ୍ର ।—ସେମନ୍ତେ କଥା କାହିଁକି କହୁଚୁ ?—ଆମଠୁ କଣ ଭଣ୍ଡି ଖାଇବାକୁ ତାଙ୍କର ଆଶା ଥିଲା ?

ଦ୍ୱି ।—ସେ ଧୋବଧାଉଳିଆଙ୍କ କଥା କଣ ତୁ ଅଜଯାଏ ଜାଣି ନାହୁଁ ?—ଧୋବଧାଉଳିଆ ଗ୍ରେଉ କରନ୍ତି, ରକ୍ଷଣୀ ଦେଖିଲେ ମାରଗୋଡ଼ାନ୍ତି—ତାଙ୍କ ଭିତରେ ଧୂଆମୂଳା ଯେ ଅଧୂଆମୂଳା ସେ ।—

ନେପଥ୍ୟେ ।—( ତୂରଧ୍ୱନି )

ଦ୍ୱି ।—ବୋପେର ! ଏ କି ଶବଦ ?

ପ୍ର ।—ଅରେ ତୂରୀ ବାଜଲାପରି ତ ଶୁଭିଲା ।

ନେପଥ୍ୟେ ।—( ପୁନର୍ବାର ତୂରଧ୍ୱନି )

ଦ୍ୱି ।—ତୂରୀ କାହିଁକି ବାଜୁଚି ? ରଜା ଆଉଚନ୍ତି କି ?

ପ୍ର ।—ନାହିଁ—ରଜା ଆସୁଥିଲେ ବାଜା ବାଜୁଥାନ୍ତା—ଖାଲି ତୂରୀଟାଏ ବାଜନ୍ତା କାହିଁକି ?

ଦ୍ୱି ।—ଚାଲ ଚାଲ ଦେଖିବା—ତୋର ଲଙ୍ଗଳ ଯୁଆଳି ଉଠା ।

ନେପଥ୍ୟେ ।—( ପୁନର୍ବାର ତୂରଧ୍ୱନି )

ପ୍ର ।—ସ୍ୱାଡ଼େ ଆଉଚି ପରା !—( ଲଙ୍ଗଳ ଯୁଆଳି କାନ୍ଧରେ ଦେଇ )—ବାଭେ !—ନମାର ସରବାଟେ ଯିବା—ନୋ କୁହାଟା ଟିକେ ପକେଇ ନେବ ।—ଦେଖିଲୁଣି ଗୋଟାଏ ସିପେଇ ତୂରୀ ବଜେଇ ଆଉଚି ।

[ ବନଦୂତର ତୂରବସ୍ତ୍ରେ ଓ ତତ୍ପଶ୍ଚାତ୍ ଅନେକ ନଗରବାସିଙ୍କର ପ୍ରବେଶ ]

ବ୍ର, ଦୂ ।—( ବସ୍ତ୍ରଧ୍ୱଜପତାକ )

ଶୁଣ ଶୁଣ ପ୍ରଜାମାନେ ଶ୍ରୀରାମ-ଆଦେଶ,
ଶୁଣ ସର୍ବେ ଯେ ଅଛନ୍ତି ଏ ଅଯୋଧ୍ୟାଦେଶ ।
ଶୁଣ ମନ ଦେଇ ଏହି ଶୁଭ ସମାଚାର,
ଅଯୋଧ୍ୟାନଗରେ ଯାହା ହେଉଛି ପ୍ରଚାର ।
ଅଖଣ୍ଡ-ଅବନୀପାଳ ରାଜଚକ୍ରବର୍ତ୍ତୀ,
ମହାରାଜ ଦଶରଥ ଅକ୍ଷୟକୀରତି
ରାଜଭୋଗେ କ୍ଲାନ୍ତ ହୋଇ ନେଲେ ଅବସର,
ବସିବେ ସେ ପଦେ ନିଜ ଅଗ୍ରଜ କୁମର ।
ସତ୍ୟବାଦୀ ଜିତେନ୍ଦ୍ରିୟ ନବଘନଶ୍ୟାମ,
ବୀର ଧୀର ଦୀନଦୁଃଖି- ପାଳକ ଶ୍ରୀରାମ
କାଲି ଯେବେ ପୁଷ୍ୟାଯୋଗ ହେବ ଚନ୍ଦ୍ରଙ୍କର,
ସୂର୍ଯ୍ୟବଂଶସିଂହାସନ କରିବେ ଉଜ୍ଜ୍ୱଳ ।
ଅନ୍ଧ କଣା ଦୀନ ଦୁଃଖୀ ରାଜଦ୍ୱାରେ ଯାଇ,
ନିଜସ୍ୱଘୋଷଣା କରି ଯାହା ଇଚ୍ଛା ପାଇ ।
ଆଉ ଶୁଭ ସମାଚାର ଚଉଦବର୍ଷର,
କ୍ଷମା ହେଲା ଯାର ଯେତେ ଦେୟ ରାଜକର ।
ଅତଏବ ରାଜ-ଆଜ୍ଞା ଶିରୋଧାର୍ଯ୍ୟ କରି,
ଆନନ୍ଦ-ଉତ୍ସବେ ମାତ କାହାକୁ ନ ଡରି ।

ନଗରବାସିମାନେ ।—ଜୟ ରାମରାଜାଙ୍କ ଜୟ ।

[ ନଗରବାସିଙ୍କର ପ୍ରସ୍ଥାନ ।

ପ୍ର ।—ସାଲେ ।—ସତେ କି ଏ ଶୁଭଦିନ—ଆମର ରାମଚନ୍ଦ୍ର ରଜା ହେବେ—ବାହୁଆ ! ବାହୁଆ ।—ସାଲେ ବୁଢ଼େ ଖୁସିଖବର ମୁରଦକ ଥାଇଁକି ଜଣେଇଲ ନାହିଁ ?

ରା, ଦୂ ।—ଅରେ ନାହିଁ ଆଜିତ ରାମଙ୍କୁ ଆଜ୍ଞା ହେଲା ।—ଚାର ଆଡ଼େ ଲୋକ ଦଉଡ଼ିଛନ୍ତି । ( ଗମନୋଦ୍ୟତ ) ।

ପ୍ର ।—ସାଲେ ନାଟଫାଟ ହବନା ?

ରା, ଦୂ ।—ଅରେ ମହାରାଜଘର ଅଭିଷେକ—ଏଥିରେ ନାଟ ହେବ ନାହିଁତ ହେବ କେଉଁଥିରେ !—ରୋଷନୀ, ବାଣ, ନାଚ ନେତେ କଣ ହେବ—ଆଜ ଯା ହେବ ହେବ, କାଲି ସବୁଠୁଁ ବଢ଼ିଆ ହେବ ।

ପ୍ର ।—ଆଉ ରାଜାଙ୍କର କଣ କହିଲ ?

ଗ, ଦୂ ।—ଆରେ ତୋତେ ମୁଁ ଆଉ ଏତେ ବୁଝେଇ ପାରେଁ ନା ।

ପ୍ର ।—ବୁଝେଇବ ନାହିଁ ତ ଆଉ କଣ ମିଁ ବୁଝିବାପାଇଁ କଉଁଠି ଗୋଟାଏ ଅବଧାନ ଡକାଇବ ଯିବ ?

ଗ, ଦୂ ।—ଆରେ ନାହିଁ, ଏ ବର୍ଷଗୋଟାଯାକର ଖଜଣା ସମସ୍ତଙ୍କୁ ମାଫି ହେଲା ।

ପ୍ର ।—ଯେ ଖଜଣା ଦେଇପକେଇଛନ୍ତି ?

ଗ, ଦୂ ।—ସେ ଆରବର୍ଷକୁ ମଜୁରା ପାଇବେ ( ପ୍ରସ୍ଥାନୋଦ୍ୟତ ) ।

ପ୍ର ।—ରୁହ ରୁହ ସାଙ୍ଗେ, ଅନୁରତ ଗୋଟାଏ ଅଡ଼ୁଆ ଅଛି । ଭଲ ରଜାତ ଯେମିତି ଖଜଣା ମାଫି ଦେଲେ—ଜମିଦାରମାନେ ଛାଡ଼ିବେଟି କ, ନା ତଣ୍ଟି ଚିପି ନେବେ ?

ଗ, ଦୂ ।—ଆରେ ମୁଁ କଣ ଅଦାଲତ ହୋଇ ଅଛି କି ?—ଶମ୍ଭୁ ଅଜ୍ଞା ହୋଇଛି—ଯାଉ ଯେତେ ଏ ବର୍ଷର ଖଜଣା ଦେଣ ପଡ଼ିବ ସବୁ ମାଫି ଦିଆଗଲା;—ତୁମର ଜମିଦାରମାନେ ଛାଡ଼ିବେ କି ନାହିଁ ତୁମେ ଯାଇଁ ବୁଝ—ଦରବାର କର—ମୋତେ ଯାହା ହୁକୁମ ହୋଇଥିଲା ମୁଁ କହିଗଲି ( ତୂରୀ ବଜାଇ ପ୍ରସ୍ଥାନ ) ।

ଦ୍ୱି ।—ବୋପେଇ ! ତୁ କଣ ଟା କଥା ସତ ବୁଝିଲୁ କି ? ବାପ ଥାଉଁ ଥାଉଁ ପୁଅ କଉଁଠି ରଜା ହେଲାଣି ? ଗାଦର ମହାନ୍ତ ବଇଠ—ଚେଲା କଣ ମହାନ୍ତ ହେଇ ପାରିବ ?

ପ୍ର ।—ସତେତ, ସେ ତେବେ କଣ କହିଗଲା ?

ଦ୍ୱି ।—ଟା ମୁଣ୍ଡ ।

ପ୍ର ।—ରହ ରହ, ମହାନାୟକେ ଆସୁଛନ୍ତି ବୁଝିବା ।

[ ଲେଙ୍ଗଡ଼ା ମହାନାୟକର ପ୍ରବେଶ ।

ପ୍ର ଓ ଦ୍ୱି ।—ଅବଧାନେ ଓଳଗ ।

ମ ।—ଅଷ୍ଟୋତ୍ତରଶତବର୍ଷପରମାୟୁରସ୍ତୁ ।

ପ୍ର ।—ଅବଧାନେ ମୁଣ୍ଡରେ ପାଟ ବାନ୍ଧିଛ ?

ମ ।—ଆରେ ରାଜପୁତ୍ରରେ ଆଜ ଖଡ଼ ପକାଉଥିଲେ—ଏ ଶିରୁପାଙ୍ଗା ସେଇଠୁଁ ଶମ୍ଭୁ ମିଳିଛି ।

ପ୍ର ।—ଅବଧାନେ—ନଅର ଖବର କଣ ?

ମ ।—ଜାହିଁ କି ଏଣେ କଣ ଦୂତ ଅସି ନାହିଁ କି ?—ଅନେକ ସହରେ ଥାନ କର ଶମ୍ଭୁ ଦୂତମାନଙ୍କୁ ପଠାଇ ଦେଲେଁ !

ପ୍ର ।—ହଁ ହଁ ଦୂର ଅସିଥିଲା ଯେ—ସେ ଯା କହିଗଲା ଟିକେ କେମତ କେମତ ଅଡ଼ୁଆ ଲାଗୁଚ ।

ମ ।—କଣ—ଅଡ଼ୁଆ ଲାଗୁଛି ?—କାଲି ରାମଚନ୍ଦ୍ର ରାଜା ହୋଇ ସିଂହାସନରେ ଅଭିଷିକ୍ତ ହେବେ ଯୁଝି କହି ଯାଇ ନାହିଁ ?

ପ୍ର ।—ହଁ ତା କହିଲା ଯେ—ତ ବାପ ଥାଉଁ ଥାଉଁ ପୁଅ କେମନ୍ତ ରଜା ହବ ?

ମ ।—ଆରେ ଇକ୍ଷ୍ୱାକୁବଂଶୀୟ ରାଜାମାନଙ୍କର—ଆମ ରାଜକୁଳରେ—ଏହିପରି ବିଧି ଅଛି ଯେ ରାଜା ବୁଢ଼ା ହୋଇଗଲେ ପୁଅକୁ ପ୍ରଜାପାଳନର ଭାର ଦେଇ ଧର୍ମକର୍ମ ପାଇଁ ସଂସାର ତ୍ୟାଗ କରନ୍ତି ।—ଏବେ ବୁଝିଲୁ ?

ପ୍ର ।—ହଁ ତା ହବ;—ଅବଧାନେ, ଆଉରି ଗୋଟିଏ କଥାଅଛି ।

ମ ।—କଣ ?

ପ୍ର ।—ଏ ଯେ ଖଜଣା ମାଫି ଦବା କଥା କହୁଥିଲା—ଜମିଦାରମାନେ ଛାଡ଼ିବେଟିକି ?

ମ ।—ଆରେ ସେକଥା କଣ ଖଜାଂ ବଶ୍ୱର କଉ ନାହାନ୍ତି ?—କଥାରେ କହନ୍ତି—"ବାଡ଼ି ହୋଇ ଯେବେ ଖାଏ ବେଉଷା, ବଇଦ ହୋଇ ନ ଧରଇ ମୂଷା, ରଜା ହୋଇକରି ତଣ୍ଡଇ ଚଷା, କହ କ ହୁଏ ସେ ଦେଶର ଦଶା" । ଆମ ମହାରାଜ ଦଶରଥ ଏ କଥା ଭଲକରି ଜାଣନ୍ତି । ଦେଖୁନାହୁଁ, ଅଜ କାଲି ପ୍ରଜାମାନେ କେମନ୍ତ ସୁଖରେ କାଳହରନ୍ତି—ରାଜ୍ୟ କେମନ୍ତ ନିଶ୍ଚିନ୍ତ ଅଛି । ଖଜଣା ମାଗିବେଳେ ଏହିସବୁ କଥାର ତର୍କ ହୋଇ ଜମିଦାରଙ୍କ ନାଁରେ ରାଗି ଆଜ୍ଞା ଖମ୍ଭ ଚଟାଉ ଗଲା ଯେ ଜମିଦାର ଓ ପ୍ରଜା ସମସ୍ତଙ୍କର ଖଜଣା ମାଫି ହେଲା । ଯେଉଁ ଜମିଦାର ପାହୁଲାଟିଏ ପ୍ରଜାଙ୍କଠୁଁ ତଣ୍ଡିବାର ଶୁଣୁଟରେ ଗୁହାରି ହେବ ସେ ଜମି ଦାରଙ୍କୁ ଏକାବେଳକେ ଦେଶ-ନିକାଲ କରି ଦିଆଯିବ ।

ପ୍ର ।—ହଁ ଆମ ରଜାପରି କେହି ସୁବୁଦ୍ଧି ଦୀନଦୁଃଖିପ୍ରଜାପାଳକ ହେବେ କି ?

ମ ।—ଆଉ ଦେଖିବୁ ତାଙ୍କଠୁଁ ବଳି ରାମଚନ୍ଦ୍ର ଆମର କେମନ୍ତ ପ୍ରଜା ପାଳିବେ ।

ପ୍ର ।—ହଁ ସେ କଥା ମିଛ ନୁହେ—ତୁଳସୀ ଦୁଇପତ୍ରରୁ ବାସେ—ଏଇଆଡ଼ୁ ସେଥିର ଚିହ୍ନ ଦେଖାଗଲାଣି ।

ମ ।—ଏବେ ହେଲା ?—ଆଉ ତ କିଛି ଛନ ନାହିଁ ?

ପ୍ର ।—ନାହିଁ ଅବଧାନେ ।

ମ ।—ତେବେ ଯାଅ ଏବେ—ଦେଲ ପାଇଟି ରକ୍ଷିହେଇ ବ'ଦନ ଅଳନରେ ଫୁଲ !

ପ୍ର ।—ବାଇଏ, ଶୁଳ ଲେଉଟି ଯିବା—ହଲପାଇଟି ରଜାଙ୍କ ଶୁଭଦିନରେ କରିବା ଉଚିତ ନୁହ ।

ଦ୍ୱି ।—ହଉ—ଶୁଳ—ବୋପଲ, ଆଉ ସେ ଗୋଟେଛଁମାନେ କଣ କହୁଥିଲେ ?

ପ୍ର ।—ଆରେ—ଛେ—"ରାମରାହାଉ, ସବ ମିଛ କହୁ କ ଯଶ ପାଉ" । ତାଙ୍କ କଥା ଅନୁରେକ ହେଲାଣି—ରାଜ୍ୟଯାକରେ ଚାର ରଙ୍ଗର ଖବର ହେଉଚ—ସେ କେମିତି କରି ଏତେଡ଼ା ମିଛ କରି ରଜାଙ୍କର ଅମଙ୍ଗଳ କଥା କହି ଲୋକଙ୍କୁ ଚରଚ କରି ଦେଲେ !

ଦ୍ୱି ।—ମି ପରି କହୁଥିଲି—ସେମିତି କଷ୍ଟ ହେଉଥିଲେ ଅବଧାନେ କ କହି ନ ଥାନ୍ତେ ? ( ହଲ ଗୀତ ) ।

ବନସ୍ତ ଫଳମକ ଲୋ ଭଏସେ ଗଙ୍ଗର ଜାଲ—
ବଗ ଫଣ୍ଟରଇ ବସୁଲ ଲୋ ସଞ୍ଜ ହେଲା ଯିବା ଶୁଳ ।

[ ଉଭୟଙ୍କର ହଲଗୀତ ଗାଉଁ ଗାଉଁ ପ୍ରସ୍ଥାନ ଓ

ଯବନିକା ପତନ ।

( ନେପଥ୍ୟେ ଗୀତ )

ରାଗିଣୀ ସୁରଟ ମଲ୍ହାର—ତାଳ କବାଲି ।

ମାଧବ କେ ମାର ଆନନ୍ଦରେ ।

ମାତିଛୁ ଅଯୋଧ୍ୟା ଆଜ ମଡାଇ ମାନବେ ସରେ ସରେ । ପଦ ।
ଧନୀ ଦୁଃଖୀ ସର୍ବସ୍ଥଳୀ, ବ୍ରାହ୍ମଣ ଚଣ୍ଡାଳେ ମିଳ,
ଆନନ୍ଦ ଉତ୍ସବେ ଭୁଲି ମାତିଛନ୍ତି କେତେ ଆମୋଦରେ । ୧ ।
ରାଜା ପ୍ରଜା ସର୍ବେ ଭୋଳ, ରୋଦନେ ଆନନ୍ଦ ଘୋଳ,
ଦିବ୍ୟଧାମେ ଦିବ୍ୟ ଗୋଳ ସୁଧା ଅଶେ ଦେବେ ଦବା କରିର । ୨ ।
ରାଜା ହେବେ ରଘୁବର, ପାଳିବେ ପ୍ରଜାସକଳ,
ଦୁଲଦୁଳ ଶଙ୍ଖର ଘୋଷେ ବାର ବାର ରୋଦନରେ । ୩ ।

# ଦ୍ୱିତୀୟ ଅଭିନୟ ।

## ପ୍ରଥମ ଦୃଶ୍ୟ ।—ରାଣୀ କୌଶଲ୍ୟାର ଅନ୍ତଃପୁର ।

(ପର୍ଯ୍ୟଙ୍କୋପରି ରାଣୀ କୌଶଲ୍ୟା ଅର୍ଦ୍ଧଶୟାନାବସ୍ଥାରେ ଉପବିଷ୍ଟା ।)

କୌ ।—(ବାମଚକ୍ଷୁ ଅଙ୍ଗୁଳିଦ୍ୱାରା ମର୍ଦ୍ଦନ କରୁ) ଉଃ—ଆଜି ବାମଚକ୍ଷୁଟା ଏତେ ଡେଉଁଛି କାହିଁକି ?—ଶାସ୍ତ୍ରରେ ଅଛି ବାମଚକ୍ଷୁର ଅଧୋଭାଗ ଅର୍ଦ୍ଧସ୍ଥାନ ସ୍ଫୁରିଲେ ସୁଖ ଲାଭ ହୁଏ, ମାତ୍ର ଏ ଅଭାଗିନୀର କପାଳରେ କି ବିଧାତା ସୁଖ ଲେଖିଚନ୍ତି ?—ଅଥବା—ବିଷମପ୍ୟମୃତଂ କ୍ୱଚିଦ୍ ଭବେତ୍ ଅମୃତଂ ବା ବିଷମୀଶ୍ୱରେଚ୍ଛୟା—ଯେଉଁ ଶିଶିର-ସେକଦ୍ୱାରା ଲତା ପତ୍ରାଦି ଉତ୍ଫୁଲ୍ଲ ହୋଇ ଉଠେ ତାହା ସ୍ପର୍ଶ କଲେ ପଦ୍ମ ନଷ୍ଟ ହୁଏ—ମୋର ଅବା ସାଧାରଣଫଳର ବିପରୀତ ହେବ ଏହା କିଏ କହି-ପାରେ !—ଭଗବାନ୍ ! ଦୀନବନ୍ଧୋ ! ଅଭାଗିନୀ ତ ଶ୍ରୀଚରଣରେ କେତେବେଳେ ମନଃପ୍ରାଣ ସମର୍ପଣ କରିନାହିଁ ?

[ଶ୍ରୀକଣ୍ଠ ଓ ଶ୍ରୀଧରଙ୍କ ଦ୍ରୁତବେଗେ ପ୍ରବେଶ ।

ଶ୍ରୀକଣ୍ଠ ।—ମା—ମୁଁ ଗୋଟିଏ—

ଶ୍ରୀଧର ।—ଖୁସି ଖବର—

ଶ୍ରୀକଣ୍ଠ ।—ଉଃ—

ଶ୍ରୀଧର ।—ମୁଁ କହିବି—

ଶ୍ରୀକଣ୍ଠ ।—ମୁଁ ତ କହୁଛି—ତୁ କାହିଁକି ଉପରେ ପଡ଼ୁଛୁ ?

ଶ୍ରୀଧର ।—ମୁଁ କହିଲେ ?—ମୋତେ କଣ କହି ଆସେ ନା ?

କୌ ।—ତୁମ୍ଭେ କଣ-କଳି ଲଗେଇଲ କି ? ଧଇଁସଇଁ ହୋଇ ଦଉଡ଼ିଲ କାହିଁକି ? ଶ୍ରୀଧର ତୁତ ବୁଝିଲା ସୁଝିଲା ଲୋକ—ସେ ପିଲାଲୋକ—ତାର ଯେବେ ଜିଦ ହେଲା ସେହି କହୁ ନା କାହିଁକି—କଥା କଣ ?

ଶ୍ରୀକଣ୍ଠ ।—ମା—ଗୋଟିଏ ଖୁସିଖବର ଆଣିଛୁ—

କୌ ।—ଆରେ ଶ୍ରୀକଣ୍ଠ ! ଏ ଅଭାଗିନୀ ସକାଶେ ବିଧାତା କି ଖୁସିକଥା ରଖି-ଛନ୍ତି ଯେ ତୁ ଆସି କହିବୁ !—କୌଶଲ୍ୟାର ଏ ସ୍ୱପ୍ନରେ ଚିରକାଳ ଦୁଃଖ ସହି କରି ରହିଛି—ଖୁସିଖବର ହେଉଥିଲେ ଆଜସରିକି ତୁମ୍ଭେମାନେ ନିହାଲ ହୋଇଥାନ୍ତ—ଅଭାଗିନୀର ଆଖି ଲୁହ ଗଡ଼େଇ ଗଡ଼େଇ ଫୁଲି ରହି ନ ଥାନ୍ତା !

ଶ୍ରୀଧର ।—ନାହିଁ ମା—ସବୁଠୁ ସତ ଗୋଟିଏ ଖୁସିଖବର ଅଛି ।

ଶ୍ରୀକଣ୍ଠ ।—ମା ଆଜ ମହାରାଜଙ୍କ ଦରବାରଗୃହରେ ଅନେକ ରାଜା, ସାମନ୍ତ, ମନ୍ତ୍ରୀ ଓ ପ୍ରଜାମାନେ ଉପସ୍ଥିତ ଥାଇ ଅନୁରୋଧ କରିବାରୁ ରାଜକୁମାର ପ୍ରିୟବର ଶ୍ରୀରାମଚନ୍ଦ୍ରଙ୍କୁ ସିଂହାସନରେ ବସେଇବାର ମହାରାଜ ଧାର୍ଯ୍ୟ କଲେ । ଆମେ ସେହି କଥା ଶୁଣି ଶୀଘ୍ରରେ ଗୋଚର କରିବାକାରଣ ଦଉଡ଼ି ଆସିଲୁଁ ।

କୌ ।—(ସିଧା ହୋଇ ବସି ବ୍ୟସ୍ତଭାବେ)—କ ରେ ଶ୍ରୀକଣ୍ଠ ! ତୁ ସତ କହୁଚୁ ?

ଶ୍ରୀକର ।—ମା ଏହିକ୍ଷିଣି ପର ରାଜସଭାରେ ଏ କଥା ପଡ଼ିଥିଲା । ଅଯୋଧ୍ୟାବାସୀ ଅସଂଖ୍ୟ ଲୋକେ ରାଜଦରବାରରେ ଶ୍ରୀରାମଙ୍କର ବହୁତ ସୁଖ୍ୟାତି କରି ସିଂହାସନାଭିଷେକ ପ୍ରାର୍ଥନା କଲେ—ମହାରାଜ ସେମାନଙ୍କର ପ୍ରଶଂସାବାଦରେ ସନ୍ତୋଷ ଲାଭ କରି ଦରବାରରେ ଶ୍ରୀରାମଚନ୍ଦ୍ରଙ୍କୁ ଯୌବରାଜ୍ୟରେ ଅଭିଷେକ କରିବାର ଅନୁମତି ଦେଲାରୁ ପ୍ରଜାମାନେ ତୁମୁଳ ଜୟଘୋଷଣା କରି ଆପଣା ସନ୍ତୋଷ ଜଣାଇଲେ । ରାଜ୍ୟଯାକ ସୁଶୋଭିତ ଓ ଅଭିଷେକକାର୍ଯ୍ୟର ଯଥାବଶ୍ୟ ଆୟୋଜନ କରିବାକାରଣ ଶ୍ରୀ ମହାରାଜାଙ୍କ ଛାମୁରୁ ଆଦେଶ ହେଲାମାତ୍ରକେ ମୁଁ ଆଉ ଶ୍ରୀକଣ୍ଠ ଧାଇଁ ଆସିଲୁଁ ।

କୌ ।—ଶ୍ରୀକର ! ଏତେଦିନେ ଜାଣିଲି ବିଧାତା ଦୁଃଖିନୀପ୍ରତି ପ୍ରସନ୍ନ ହେଲେ । ଶ୍ରୀକର ! ପୁତ୍ରର ଶୁଭସମ୍ବାଦ ପ୍ରାପ୍ତ ହେଲେ ମା ମନରେ ଯେ କି ଆନନ୍ଦ ହୁଏ ତାହା ତୋତେ ମୁଁ ଆଉ କ କହିବ—କୌଶଲ୍ୟାର ଦୁଃଖପୁରୀରେ ମୋର ଶ୍ରୀରାମ ଆଜ ଆନନ୍ଦଚିତ୍ତରେ ଆନନ୍ଦୋତ୍ଫୁଲ୍ଲା ଜନନୀର କ୍ରୋଡ଼ରେ ଉପଗତ ହେବେ ଏହା ମନେ କରି ସ୍ୱର୍ଗସୁଖ ଲାଭ ହେଉଛି ! ଶ୍ରୀକର—ତୋର ସଖା ରାମଚନ୍ଦ୍ର କାହାନ୍ତି ?

ଶ୍ରୀକର ।—ପ୍ରିୟବର ଶ୍ରୀରାମଚନ୍ଦ୍ର !—ଆଉ ପ୍ରିୟବର ନୁହନ୍ତି, ଏବେ ମହାରାଜ-ଶ୍ରୀରାମଚନ୍ଦ୍ର—ସେ ରାଜସଭାରେ ଉପସ୍ଥିତ ଥିଲେ । ମହାରାଜ ତାହାଙ୍କୁ ଛାମୁକୁ ଡକାଇନେଇ ଆପଣା ଅଭିପ୍ରାୟ ଜଣାଇ ଦେଲାରୁ ପ୍ରଜା ଓ ସଭ୍ୟମାନେ 'ଜୟ ଶ୍ରୀରାମଚନ୍ଦ୍ର କି ଜୟ' ବୋଲି ଜୟନିନାଦ କଲେ । ସେ ସେହିଠାରେ ଥିଲେ ଆମେମାନେ ଚାଲିଆସିଲୁଁ । କାଲି ରାମଚନ୍ଦ୍ରଙ୍କର ଅଭିଷେକ ହେବ ।

କୌ ।—ଶ୍ରୀକର !—ଶ୍ରୀକଣ୍ଠ !—ତୁମମାନଙ୍କୁ ମୁଁ ରାମଚନ୍ଦ୍ରଙ୍କଠାରୁ ଭିନ୍ନ ବୋଲି ବିବେଚନା ନ କରେଁ । ମୋର ରାମ ଯେପରି ପ୍ରିୟ ତୁମେମାନେ ମଧ୍ୟ ସେହିପରି ପ୍ରିୟ । ତୁମମାନଙ୍କର ଜନନୀ ଯେଉଁଦିନ ତୁମମାନଙ୍କୁ ଆଣି ମୋତେ ସମର୍ପିଦେଲେ ସେଦିନଠାରୁ ମୁଁ ତୁମକୁ ଆପଣା ପୁତ୍ରପ୍ରାୟ ଜ୍ଞାନ କରଚ ।—ଶ୍ରୀକର, ଶ୍ରୀକଣ୍ଠ, ଶ୍ରୀରାମ ରାଜାଙ୍କର ଜ୍ୟେଷ୍ଠପୁତ୍ର ସେତ ଅଟି

ହେଉ କାଲି ହେଉ ଦିନେ ସିଂହାସନରେ ବସନ୍ତେ—ତେବେ ଲୋକମାନେ ତାହାଙ୍କର ମୁଖଚାହିଁ କରି ମହାରାଜଙ୍କୁ ଅନୁରୋଧ କରିଥିବା ଶୁଣି ମନ ଯେପ୍ରକାର ପ୍ରସନ୍ନ ହେଉଛି ତା କି କହିବି ?—ଯାହାହେଉ, ବତ୍ସ, ତୁମ-ମାନଙ୍କୁ ଏ ଶୁଭସମ୍ବାଦ ଦେବାରେ ଦୁଃଖିନୀ କୌଶଲ୍ୟା କି ପୁରସ୍କାର ଦେବ ? ଏହି ( କଣ୍ଠହାର ଉନ୍ମୋଚନ କରି )—ଏହି କଣ୍ଠହାର ପ୍ରଦାନ କଲି ସନ୍ତୁଷ୍ଟ ହୋଇ ଆପଣା ମାତୃସମୀପେ ଗମନ କରି ଏ ଶୁଭ-ସମ୍ବାଦ ଜଣାଇଦିଅ—ସେ ପର୍ଯ୍ୟ ମୋର ଗୁରୁ । ( ଗୋ ୨ ଟି କଣ୍ଠହାର ଉଭୟଙ୍କ ଗଳାରେ ପିନ୍ଧାଇଦେବା ) ଆଉ ଭଣ୍ଡାରରକ୍ଷକଙ୍କୁ ଡାକ ଆଣ ତୁମମାନଙ୍କୁ ପ୍ରଚୁର ସୁବର୍ଣ୍ଣ, ହୀରା ଓ ଧେନୁ ପ୍ରଦାନ କରିବି ।

ଶ୍ରୀକର ।—ଯେ ଆଜ୍ଞା ମା !—ତେବେ କଣ ଖମୁରୁ ନେଇ ନ ଥାଉଁ ଯେ ( ଭୂମିଷ୍ଠ ଦଣ୍ଡବତ ପ୍ରଣାମ ) ।

ଶ୍ରୀକଣ୍ଠ ।—( ଭୂମିଷ୍ଠ ଦଣ୍ଡବତକରଣ ) ।

[ ଶ୍ରୀକର ଓ ଶ୍ରୀକଣ୍ଠର ପ୍ରସ୍ଥାନ ।

ପଟକ୍ଷେପଣ ।

---

ଦ୍ୱିତୀୟ ଦୃଶ୍ୟ—ଦେବଗୃହ ।

[ ପଟ୍ଟବସ୍ତ୍ରପରିହିତା କୌଶଲ୍ୟା, ସୁମିତ୍ରା, ସୀତା ଓ ଲକ୍ଷ୍ମଣ ଦଣ୍ଡାୟମାନ । ]

କୌ ।—ଭଉଣି—ମୋର ରାମଟି ଯେପରି, ଲକ୍ଷ୍ମଣଟି ସେହିପରି ଆଉ ଭରତ-ଶତ୍ରୁଘ୍ନ ମଧ୍ୟ ସେହିପରି—ମୋତେ ଏ ଚାରିଜଣ ଏକା ଦେଖାଯାନ୍ତି । ଭଉଣି, ରାମ ରାଜା ହେଲେ କି ଲକ୍ଷ୍ମଣଭରତଶତ୍ରୁଘ୍ନ ରାଜା ହେଲେ ନାହିଁ ?

ସୁମି ।—ସେ କି କଥା କହୁଛ—ରାମ ଯେତେବେଳେ ଜ୍ୟେଷ୍ଠପୁତ୍ର—ସେ ରାଜା ନ ହେବେତ ରାଜା ହେବ କିଏ ? ଲକ୍ଷ୍ମଣ ହେଲା କି ଭରତଶତ୍ରୁଘ୍ନ ହେଲେ ଏମାନେ ସମସ୍ତେ ରାମର ସେବାକାରୀ । ଆର୍ଯ୍ୟେ ! ମୁଁ ଜାଣେ ଲକ୍ଷ୍ମଣଭରତଶତ୍ରୁଘ୍ନ ରାମର ଆଜ୍ଞାକାରୀ—ଯେତେବେଳେ ରାମ ରାଜା ହେଲେ ସେତେବେଳେ ଏମାନଙ୍କର ସୌଭାଗ୍ୟ ଦୁଇଗୁଣ ବଢ଼ିଲା; ତା ନ ହେବ କାହିଁକି—ରାମପରି କି ମନୁଷ୍ୟ ମିଳିବ ?—ସେ କେଡ଼େ ବିଚକ୍ଷଣ, କେମନ୍ତ ପ୍ରିୟଦର୍ଶୀ, କେମନ୍ତ ମିଷ୍ଟାଳାପୀ—ତାଠି ତ ଏ ରାଜ୍ୟଯାକ ଲୋକେ ବଶ ହୋଇଛନ୍ତି ।

କୌ ।—ଶ୍ରୀକରଶ୍ରୀକଣ୍ଠ ଆସି କହୁଥିଲେ ଯେ ପ୍ରଜାମାନେ ଆଉ ସାମନ୍ତରାଜା

ସମସ୍ତେ ରାମଚନ୍ଦ୍ରଙ୍କୁ ଅଭିଷିକ୍ତ କରିବାକାରଣ ଅଜ ସଭାରେ ଅନୁରୋଧ କରିଥିଲେ ।—

ସୁମି ।—ଆହା ! ତାପାଇଁ ଅନୁରୋଧ ନ କରିବେକି କାହାପାଇଁ କରିବେ ? ଅଯୋଧ୍ୟା ! ଅଧିକ କି କହିବି ମୋର ମନ ଅଜ ଏପରି ପ୍ରଫୁଲ୍ଲ ହୋଇଛି ମୋତେ ପଥ ସବୁ ପାସୋର ଯାଇଛି ।

କୌ ।—ଭଉଣି ! ଆମରିତ ଦୁଃଖର ଜୀବନ—ଚିରକାଳ ଦୁଃଖେ ଦୁଃଖେ କଟିଗଲା—ଆଉ କେତେକାଳକୁ ଅବା ଆଶା ଅଛି—ଏ ଜୀବ ଥାଉଁ ଥାଉଁ ପୁତ୍ରମାନଙ୍କର ମଙ୍ଗଳ ଆଉ ସେମାନେ ସୁଖରେ ମିଳିମିଶି ରାଜ୍ୟ ଚଳାଇ ଘର କରିବାର ଦେଖିଲେ ଏ ବୃଦ୍ଧବୟସରେ ହେଲେ ମନରେ ଶାନ୍ତି ଜନ୍ମିବ, ପ୍ରାଣ ଶୀତଳ ହେବ । ଭଉଣି ! ରାମ ଯେପରି ତାର ଭାଇମାନେତ କେହି କାହାରିକ ଊଣା ନୁହନ୍ତି । ଏହି ଲକ୍ଷ୍ମଣକୁ ଦେଖ ନା—ଅଜ ରାମର ଶୁଭରାଜ୍ୟପ୍ରାପ୍ତିର ବାର୍ତ୍ତା ଶୁଣି ତାର ମନ କିପରି ପ୍ରଫୁଲ୍ଲ ହୋଇଛି—ଯେମତେ ରାମ ଆଉ ସେ ଅଭେଦାତ୍ମା—ଯେସିତ ରାମର ଗୋରୁ—କହରେ ଲକ୍ଷ୍ମଣ ! ରାମଚନ୍ଦ୍ର ରାଜା ହେବା ତୁ ମନାସୁଛିକ ?

ଲକ୍ଷ୍ମ ।—ମାଃ ! ଭାଇ ରାମଚନ୍ଦ୍ର ରାଜା ହେବା ମୁଁ କି ମନାସେଁ ତ ମନାସେ କିଏ ? ମୋର ଏ ବାହୁଦ୍ୱୟ ବିଧାତା ଶ୍ରୀରାମଚନ୍ଦ୍ରଙ୍କ ରକ୍ଷାର୍ଥ ସୃଷ୍ଟି କରିଛନ୍ତି— ସେ ମୋର ଜ୍ୟେଷ୍ଠଭ୍ରାତା ପିତୃତୁଲ୍ୟ—ସେ ରାଜା ହୋଇ ସିଂହାସନ ଉଜ୍ଜ୍ୱଳ କଲେ ଲକ୍ଷ୍ମଣ ତାଙ୍କର ଦକ୍ଷିଣପାର୍ଶ୍ୱରେ ଠିଆ ହୋଇ ଛତ୍ରଧାରଣପୂର୍ବକ ରକ୍ଷାକାର୍ଯ୍ୟରେ ବ୍ରତୀ ହେବ—ମା, ଲକ୍ଷ୍ମଣ ଏତିକି ପାଇଲେ ସ୍ୱର୍ଗଲାଭ କରିବ !

କୌ ।—ଭଉଣି ସୁମିତ୍ରେ, ଦେଖିଲୁ ତ—( ଲକ୍ଷ୍ମଣର ଶିରଶ୍ଚୁମ୍ବନ କରି )—ଦେଖିଲୁ ତ ତୁମର ପୁଅର କିପରି ବିଚକ୍ଷଣ ବୁଦ୍ଧି—କିପରି ଅମାୟିକ ଭାବ—ଭଗବାନ୍ ନାରାୟଣ ଏ ଭାଇମାନଙ୍କୁ ଏହିପରି ବୁଦ୍ଧି ଦେଇଥାନ୍ତୁ, ମୋର ଏହା ଛଡ଼ା ଆଉ କିଛି ପ୍ରାର୍ଥନା ନାହିଁ ।

[ ଯଷ୍ଟିହସ୍ତେ ସୁନନ୍ଦାର ପ୍ରବେଶ ।

କୌ ।—କି ସୁନନ୍ଦା, ଏବେ ଉତ୍ସବର କାହିଁକି ହେଲା ?

ସୁନ ।—ମା ! ଉତ୍ସବରୁ ଆଉ କଣ—ଅନ୍ତଃପୁରଯାକରେ ଯାଉ ନହେଁ ସେ ଆନନ୍ଦରେ କଲ୍ଲୋଳ ହୋଇ ଧରାପଡୋଇ ଦପଦପ କଥା କି କହି ଯାଉ ନ ହଏ; ମୁଁତ କେବେ ଖୁବ୍ ବୃଦ୍ଧେ ଅସିଛି—ସମସ୍ତଙ୍କୁ ରାମ ରାଜା ହେବା

କଥା ଚୁକିଲେ ଶଙ୍ଖଧ୍ୱନି ଓ ମଙ୍ଗଳାଚରଣ କରିବାକୁ କହିଦେଇ ଆସିଲି ।—

ନେପଥ୍ୟେ ।—( ଶଙ୍ଖଧ୍ୱନି ।)

ସୁତ ।—ଏହି ଶୁଣନ୍ତୁ ଶଙ୍ଖନାଦ ।

କୌ ।—ଭଲ—ସୁନନ୍ଦା, ଗୋପୀର ସହଚରୀ ଉଦ୍ୟାନରେ ମିଳିବା ଦୁଷ୍କର—( ବେଢ଼ରୁ କଣ୍ଠମାଳା ବାହାର କରି ) ତୁ ଏହି କଣ୍ଠମାଳା ଗ୍ରହଣ କର —( କଣ୍ଠମାଳା ସୁନନ୍ଦା ବେକରେ ପିନ୍ଧାଇଦେବା ) ଭଉଣି ସୁମିତ୍ରେ, କାଲି ରାମ ସିଂହାସନରେ ବସିବେ; ଯେଉଁ ଇଷ୍ଟଦେବ ନାରାୟଣଙ୍କ ଯୋଗେ ଏ ଶୁଭଯୋଗ ଉପସ୍ଥିତ ହୋଇଛି ସେ ଚିରକାଳ ରାମ ଏବଂ ତାହାର ପ୍ରଜାମାନଙ୍କୁ ସଦ୍‌ବୁଦ୍ଧି ଦେଇ ରାଜ୍ୟପାଳନ କରିବେ; ତୁମେ ସୀତା ଆଉ ଲକ୍ଷ୍ମଣ ସହିତରେ ଦଣ୍ଡେ ସ୍ଥିରଚିତ୍ତରେ ବସ—ମୁଁ ଏକାନ୍ତରେ ଦେବଦେବ ବିଶ୍ୱକର୍ତ୍ତା ନାରାୟଣଙ୍କ ଛାମୁରେ ରାଜଶ୍ରୀ ପ୍ରାର୍ଥନା କରେଁ ।

[ ଦେବୀ କୌଶଲ୍ୟା ମୌନାବଲମ୍ବନପୂର୍ବକ ଧ୍ୟାନନିମଗ୍ନା; ସୁମିତ୍ରା ଓ ସୀତା ସ୍ଥିରଚିତ୍ତେ ଏବଂ ଲକ୍ଷ୍ମଣ କୃତାଞ୍ଜ-ଲିପୁଟେ ବସିରହିଛେ ଉପବିଷ୍ଟ ।

ସୁତ ।—( ଗୀତ )

ରାଗିଣୀ ଇମନ—ତାଳ ତେଓଟ ।

ଗାଅ ରେ ମନ ପ୍ରଭୁ-ଯଶୋଗାନ ଗାଅ ଭଗବାନ ଧ୍ୟାଇ ରେ ।
ବକ୍ଷେ ଶ୍ରୀକାନ୍ତ କୌସ୍ତୁଭମଣିମନ୍ତ କ୍ଷୀରସିନ୍ଧୁବାସନନ୍ତଶାୟୀ ରେ । ଘୋଷା ।
ଆର୍ତ୍ତନାଶନ ଭୂଭାରହର
ତ୍ରୈଲୋକ୍ୟେ ଅନ୍ୟ ନାହିଁ ରେ ।
ନର ମୂର୍ତ୍ତି ଧରି ରାଜ ଘରରେ
ଧନ୍ୟପଦ ପ୍ରଭୁ ପାଇ ରେ । ୧ ।
ଦୀନବାନ୍ଧବ, କଉଶଲ୍ୟା ସୁତ,
ଭାବେ ଏକମନେ ଧ୍ୟାଇ ରେ ।
ଭକତଭାବେ ଭଜେ ଶ୍ରୀପଦପଙ୍କଜେ—
ରାଜଶ୍ରୀ ଉତ୍ସବରେ ଦେହ ରେ । ୨ ।

[ ରାମର ପ୍ରବେଶ ଏବଂ କୌଶଲ୍ୟା ଓ ସୁମିତ୍ରାଙ୍କ ଅଭିବାଦନ କରଣ ।

ରାମ ।—ମାତଃ, ପିତା ଆମ୍ଭଙ୍କୁ ପ୍ରଜାପାଳନକାର୍ଯ୍ୟରେ ନିଯୁକ୍ତ କରିଛନ୍ତି । ସେ ଆଜ୍ଞା ହେଲେ ସେ କାଲି ଆମ୍ଭର ଯୌବରାଜ୍ୟାଭିଷେକ ହେବ । ଜାନକୀ ଆଜ ରାତିକ ଆମ୍ଭ ସହିତରେ ଉପବାସ କରି ରହିବେ, ଉପାଧ୍ୟାୟମାନେ ଏହି ବ୍ୟବସ୍ଥା କରିଛନ୍ତି ଏବଂ ପିତା ମଧ୍ୟ ଆମ୍ଭଙ୍କୁ ଏହିରୂପ ଆଦେଶ ଦେଇଛନ୍ତି । ଏହେତୁ କାଲି ରାଜ୍ୟାଭିଷେକ ନିମିତ୍ତ ଜାନକୀର ଯେ ସବୁ ମଙ୍ଗଳାଚାର ଆବଶ୍ୟକ ଆପଣ ଆଜ ରାତିର ଆୟୋଜନ କରନ୍ତୁ ।

କୌ ।—(ଆନନ୍ଦଗଦ୍‌ଗଦ ବାକ୍ୟରେ) ରାମ ! ତୁ ଚିରଜୀବୀ ହୋ ! ତୋର ଶତ୍ରୁ ଦୂର ହେଉ ! ଶୀଘ୍ର ଜାଇ ମୋର ଆଉ ସୁମିତ୍ରାର ଅନ୍ତରଙ୍ଗମାନଙ୍କୁ ଆନନ୍ଦିତ କର ! ବତ୍ସ ! ମୁଁ ତ ଶୁଭକ୍ଷଣରେ ତୋତେ ଗର୍ଭରେ ଧରିଥିଲି ! ତୁ ମୋର ନିଜଗୁଣରେ ମହାରାଜାଙ୍କୁ ପରିତୁଷ୍ଟ କରିଛୁ । ଆହ୍ଲାଦର କଥା କ ବୋଲିବି—ମୁଁ ଯେ କମଳଲୋଚନ ହରିର ପ୍ରସନ୍ନତା ପ୍ରାର୍ଥନା କରି ବ୍ରତ ଉପବାସ କରିଥିଲି ତାହା ବ୍ୟର୍ଥ ହୋଇନାହିଁ, ରାଜଶ୍ରୀ ତୋତେ କାଲି ଆଶ୍ରୟ କରିବେ ।

ରାମ ।—(ହାସ୍ୟମୁଖେ) ଭାଇ ଲକ୍ଷ୍ମଣ ! ଏବେ ମୋ ସଙ୍ଗେ ତୋତେ ମଧ୍ୟ ରାଜ୍ୟଭାର ବହନ କରିବାକୁ ହେବ । ତୁ ମୋର ଅପର ଅନ୍ତରାତ୍ମା ସୁତରାଂ ରାଜଶ୍ରୀ ମୋ ପ୍ରାୟ ତୋତେ ମଧ୍ୟ ଆଶ୍ରୟ କରିଛନ୍ତି । ମୋର ଜୀବନ ଆଉ ରାଜ୍ୟକାମନା କେବଳ ତୋହପାଇଁ—ଏଣୁ ତୁ ଅଭିଲଷିତ ଭୋଗ୍ୟ ପଦାର୍ଥ ସବୁ ଉପଭୋଗ କର ।

ସୁମି ।—ବତ୍ସ ! ତୋପରି ସ୍ନେହପୂର୍ଣ୍ଣ ଆତ୍ମପରଜ୍ଞାନଶୂନ୍ୟ ଭାଇ ଧରାଧାମରେ ମିଳିବା କଠିନ । ତୋତେ ଦେଖିଲେ ତୁ ଯେ କୌଶଲ୍ୟାଦେବୀଙ୍କ ଗର୍ଭରୁ ଜାତ ହୋଇଛୁ ଏ କଥା ମୁଁ ଏକାବେଳକେ ଭୁଲିଯାଏଁ—ତୁ ମୋର ଜ୍ୟେଷ୍ଠପୁତ୍ର—ଲକ୍ଷ୍ମଣ ତୋହର ଦାସ—ଆଜ୍ଞାକାରୀ—ତୁ ଯାହା ଆଜ୍ଞା କରିବୁ ଲକ୍ଷ୍ମଣ ତାହାକୁ ପ୍ରାଣପଣେ ପାଳନ କରିବ—ତୋସେବା ତାହାର ଜୀବନ । ଆଜ ତୁ ଯାହା କହିଲୁ ତୋ ମୁହଁରୁ ଯେ ତାହା ସାଜନ୍ତ ବୋଲିବା ଅଧିକ ! ଯାହାହେଉ ରାମ ! ଶୁଭକାର୍ଯ୍ୟରେ ବିଲମ୍ବ କରିବାର ଉଚିତ ନୁହେଁ—ମୁଁ ଆଶୀର୍ବାଦ କରୁଛି ପ୍ରଜାମାନେ ଯେପରି ତୋତେ ସିଂହାସନରେ ବସାଇବାନିମନ୍ତେ ମହାରାଜଙ୍କ ଛାମୁରେ ଲଢ଼ି ଅଭିଷେକ କିମ୍ବା ଭିଆଇଛନ୍ତି ସେହିପରି ପ୍ରଜାମାନଙ୍କର ମଙ୍ଗଳବିଧାନ କରିବାନିମିତ୍ତ ଈଶ୍ୱର ଚିରକାଳ ତୋତେ ସଦ୍‌ବୁଦ୍ଧି ପ୍ରଦାନ କରିବେ । ଆଉ ତୋର ଏ ଭାଇମାନଙ୍କୁ ଚିରକାଳ ତୋଠାରେ ଅନୁରକ୍ତ ରଖିବେ ।

ଲକ୍ଷ୍ମ ।—ତାତ ! ମୃତ୍ତିକାରୁ ରସ ଆକର୍ଷଣ କରି ଯେତେବେଳେ ତରୁର ଗଣ୍ଡି ପରିପୁଷ୍ଟ ହୁଏ ସେତେବେଳେ ତାହାର ଶାଖା କି ପରିପୋଷିତ ହୁଏ-ନାହିଁ ? ଆପଣ ତରୁର ଗଣ୍ଡି, ମୁଁ, ଭରତ ଓ ଶତ୍ରୁଘ୍ନ ତହିଁର ଶାଖା ଏବଂ ପ୍ରଜାପୁଞ୍ଜ ପତ୍ରନିଚୟ । ଈଶ୍ୱରପ୍ରଦତ୍ତ ଅପରିମିତ ରସାସ୍ୱାଦନରେ ଗଣ୍ଡି ବୃଦ୍ଧିପ୍ରାପ୍ତ ହେଉଥିବା ସମୟରେ ପତ୍ରନିଚୟ ପରମାନନ୍ଦରେ ନୃତ୍ୟ କରେ—ଏତଦ୍ଧ୍ୟସ୍ତ ଶାଖାର ବିଷୟ ଆଉ ବିଶେଷକରି କହିବାର ପ୍ରୟୋଜନ ନାହିଁ ।—ତାତ ! ଆପଣ ସିଂହାସନରେ ବସିଲେ ମୁଁ ଛତ୍ର-ଧାରଣ କରି ଜନ୍ମ ସଫଳ କରିବି—ଦେବଦେବ ନାରାୟଣଙ୍କଠାରେ ଏହି ପ୍ରାର୍ଥନା ।

କୌ ।—ରାମ ! ତୁ ଆପଣା ଗୁଣରେ ଲକ୍ଷ୍ମଣ ନାହିଁକି ତୋର ଅନ୍ୟ ଭ୍ରାତାଙ୍କ ସହିତରେ ଯାବତୀୟ ପ୍ରଜା ପୁଞ୍ଜଙ୍କୁ କିଣି ନେଇଛୁ । ତୁ ସିଂହାସନରେ ବସି-ଲେ ଏମାନେ ଚିରକାଳ ତୋର ସେବାରେ ନିଯୁକ୍ତ ଥାଇ ତୋର ରାଜ୍ୟକୁ ସ୍ୱର୍ଗପ୍ରାୟ କରିଦେବେ ମୋର ଏମନ୍ତ ଭରସା ଅଛି ! ଜଗତ୍ପାତା ନାରାୟଣ ଦେବ ଚିରକାଳ ତୋତେ ଏହିପରି ସଦ୍‌ବୁଦ୍ଧି ଦେଇଥାନ୍ତୁ !—ଉଠ ସୁମିତ୍ରେ, ଆସ ଆଉ ବିଳମ୍ବ କରିବାର ପ୍ରୟୋଜନ ନାହିଁ—ଅନେକ ଉଦ୍-ଯୋଗ କରିବାକୁ ହେବ ।

[ ସମସ୍ତଙ୍କ ପ୍ରସ୍ଥାନ ଓ

ପ ଟ କ୍ଷେ ପ ଣ ।

---

## ତୃତୀୟ ଦୃଶ୍ୟ । ସୀତାଦେବୀର ଗୃହ ।

[ଉର୍ମିଳା ପର୍ଯ୍ୟଙ୍କୋପରି ଉପବିଷ୍ଟା, ପାର୍ଶ୍ୱେ ପ୍ରମଦା ଦଣ୍ଡାୟମାନା ।]

ଉର୍ମି ।—ପ୍ରମଦେ ! ଦେଖ କାଲି ସକାଳେ ଅଭିଷେକ ହେବ । ଅନୁଷ୍ଠାନରେ ଯେପରି କିଛିମାତ୍ର ଊଣା ନ ହୁଏ ।

ପ୍ରମ ।—ଅନୁଷ୍ଠାନରେ ଊଣା ! ସୀତାଦେବୀଙ୍କ ପ୍ରାୟ ସରଳହୃଦୟା ଦୟାଶୀଳା ପ୍ରିୟସଖୀ କି ଆମେ ଆଉ କେଉଁ ଜନ୍ମରେ ପାଇପାରିବୁଁ ? ତାଙ୍କ କାମରେ କଦାପି ହେଳା ହେବ ନାହିଁ । ମାଧବୀ ମାଲୁଣୀ ଆସିଥିଲା ?

ଉର୍ମି ।—ମାଧବୀକି ମୁଁ କହିଦେଇଛି ସେ ଅନ୍ଧ ଝଟଝଟିଆରୁ ଫୁଲହାର ତୋଡ଼ା ନୂଆଗୃହମାନଙ୍କରେ ପୂରେଇ ଦେଇ ଆସିବ । ସିଂହାସିଂ ବନ୍ଦାଣୀ ଏ ସମସ୍ତ ଦାସୀମାନଙ୍କୁ ରାତି ଥାଉଁ ଉଠି ଆସି ସୀତାଦେବୀଙ୍କି ସଜାଇବାକୁ କହିଦିଅ ।

ପ୍ରମ ।—ମୁଁ ମାଧବୀକି ଏଣିକି ପଠେଇ ଦେଇ ସମସ୍ତଙ୍କୁ ଡେକେଇ ଦେଇ ଆସିଛି
—ସମସ୍ତେ ପ୍ରିୟସଖୀଙ୍କ କାର୍ଯ୍ୟ କରିବାକୁ ଏକାନ୍ତ ଆଗ୍ରହ ପ୍ରକାଶ କରୁ-
ଛନ୍ତି ।—ଆଉ ନ କରିବେ କାହିଁକି ?—ଯେଉଁ ଘରେ ଥାଇ ପ୍ରିୟସ-
ଖୀର ମିଷ୍ଟାଳାପରେ ସହଚରୀମାନେ ଆପେ ଆପଣାକୁ ରାଣୀ ବୋଲି ବିଚାରୁ-
ଛନ୍ତି ସେଠେଇଁ ପାଇଟି କରିବାକୁ ଆଳସ ଆବୋର ନ ହେବେଟ ହେବେ
କାହିଁକି ? ମୋ କଥା ମୁଁ କହୁଛି କହି ଶଏ ମୋହର ଦେଇ ଦେହ
ଡାକଲେ ବି ମୁଁ ଯିବି ନାହିଁ ପରା !

ଉର୍ମି ।—ପ୍ରମଦେ ! ତୁମପରି ସହଚରୀ ପାଇବା ଭାଗ୍ୟର କଥା—ସୀତାଦେବୀଙ୍କ
ତପସ୍ୟାରୁ ତୁମକୁ ସେ ସହଚରୀରୂପରେ ପାଇଛନ୍ତି ।

[ ସୀତାର ପ୍ରବେଶ ।

ସୀତା ।—ସଖି ପ୍ରମଦେ ! ଏତେ ଚଞ୍ଚଳ ଦିଶୁଛ କାହିଁକି ? ( ଉପବେଶନ ) ।

ପ୍ରମ ।—ଆଜି ଚଞ୍ଚଳ ନ ହେବି ତ ଚଞ୍ଚଳ ହେବି କେଉଁଦିନ ? ଯେଉଁ ସହଚ-
ରୀଙ୍କି ପ୍ରାଣଠାରୁ ଅଧିକ ବୋଲି ଜ୍ଞାନ କରେଁ ତାଙ୍କର ଶୁଭବାର୍ତ୍ତାରେ
ମନ ଆନନ୍ଦରେ ଆପେ ଚଞ୍ଚଳ ହେଉଛି—

ସୀତା ।—ତହିଁ ଉପରେ ପୁଣି କାର୍ଯ୍ୟର ଭିଡ଼—

ପ୍ରମ ।—ତାତ ହବଇ ।—ତେବେ ସଖି ! ତୁମପାଇଁ ମୁଁ କାର୍ଯ୍ୟର ଯେତେ ଭିଡ଼
ହେଉପଛକେ ଡରେଁ ନାହିଁ—କାଲି ଶ୍ରୀରାମଚନ୍ଦ୍ର ସିଂହାସନରେ ବସିବେ,
ତୁମକୁ ତାଙ୍କ ବାମପାର୍ଶ୍ୱରେ ଦେଖି ଚକ୍ଷୁ ସାର୍ଥକ କରିବି !

ଉର୍ମି ।—ପ୍ରମଦେ ! ସୀତାଙ୍କୁ କି ତାଙ୍କ ବାମପାର୍ଶ୍ୱରେ ବସିବାର କେବେ ଦେଖି-
ନାହଁ ?

ପ୍ରମ ।—ଏମନ୍ତେ ଘରକଲେ ତ କେତେ ଦେଖା ଯାଉଛି—କାଲି ସ୍ପଷ୍ଟସ୍ଥଳରେ
ଦେଖାଯିବ ।

ଉର୍ମି ।—ବିବାହ ସମୟରେ ଯେ ସଜ୍ଜା ହୋଇଥିଲା ତା କି ତୁମେ ଦେଖି ନାହଁ ?

ପ୍ରମ ।—ମୁଁ ତୁମସଙ୍ଗରେ କିଆ କହିଁ ପାରିବି ନାହିଁ ।—ସେ ଅନେକଦିନ ହୋଇ
ଗଲା, ମୁଁ ମନେ କରୁଛି ତାଙ୍କୁ ଏଥର ଅଧିକକର ସଜାଇବି—ଲୋକେ
ଯେପରି କେବେ ଦେଖି ନ ଥିବେ ଆଉ ଦେଖିଲାବେଳକୁ ସ୍ୱର୍ଗଦେବୀ
ମନେ କରିବେ !

ଉର୍ମି ।—ବିବାହ ସମୟରେ କି ଅଳଙ୍କାର ସଜାଇଥିଲ ?

ପ୍ରମ ।—ମୁଁ ଆଉ କହିପାରିବି ନାହିଁ ।—ବିବାହ ସମୟରେ ସୀତାଦେବୀ କନ୍ୟା
ହୋଇ ବସିଥିଲେ—କାଲି ରାଜରାଣୀ ହେବେ—ଏ ଦେଖେ ଅନ୍ତର

ଆଉ ବାହାବେଳେ ତୁମେତ କନ୍ୟା ହୋଇ ବେଦୀକ ଯାଇଥିଲ ତେବେ ବା ଦେଖିତ ଯେ ଏବେ ଗର୍ବ କରୁତ ?—ଢାଲି ମନ ପୂରେଇ ଦେଖିବ—ସିଂହାସନରେ ସୀତାଦେବୀ ଓ ଶଚୀଦେବୀ ଠଉରେଇ ପାରିବ ନାହିଁ !

ଉର୍ମି ।—( ଈଷଦ୍ଧସିତା ) ଅଚ୍ଛା ପ୍ରମଦେ ! ଥରେ ସୀତାଦେବୀଙ୍କି ଆମେମାନେ ରତିସୁନ୍ଦରୀପ୍ରାୟ ପୁଷ୍ପାବରଣରେ ସୁସଜ୍ଜିତା କରିଥିଲୁଁ—ତୁମର ମନେ ଅଛିତ, ଦେବୀଙ୍କି କେମନ୍ତ ସୁନ୍ଦର ମାନଥିଲା ?

ପ୍ରମ ।—ସାକ୍ଷାତ୍ ରତିଦେବୀ ପ୍ରାୟ ଦେଖିବାକୁ ହୋଇଥିଲା—ତେବେ ରାମଚନ୍ଦ୍ର ଆସି ହଠାତ୍ ଚହିପାରିଲେ ନାହିଁ । ଦେବୀ ଟିକଏ ଗମ୍ଭୀରଭାବରେ ଏକ ପାଖରେ ବସିଥିଲେ—ଘଉଟିକ ସଜେଇ ଦେଇଥିଲେ—ମୁଁ ଉହ୍ନାଆଳରୁ ଅନେଇ ଦେଖିଲି ଯେ ସେ ଅନେଇ ଅନେଇ ଦଣ୍ଡକ ଉତ୍ତାରୁ ଯାଇ ଚହିଲେ ।

ଉର୍ମି ।—ସେହିପରି ସଜେଇଲେ କେମନ୍ତ ହେବ ?

ପ୍ରମ ।—ଅଛା ଉତ୍ତମ ହେବ—ତା ଉପରେ ମୁଁ ମନେ ମନେ ବଗ୍ଭର ରଞ୍ଜିତ ସ୍ୱର୍ଣ୍ଣାଲଙ୍କାର ଏମନ୍ତ ସଜରେ ଖଞ୍ଜିଦେବି ଯେ ଏକାଧାରରେ ଶଚୀଦେବୀ ଓ ରତିଦେବୀ ଶୋଭା ପାଇବେ—ଅଯୋଧ୍ୟାବାସିଏ ଦେଖି କହିବେ ଯେ ତାଙ୍କର ରାଣୀ ସାକ୍ଷାତ୍ ଲକ୍ଷ୍ମୀଦେବୀ !

ସୀତା ।—ସଖି ! ତୁମକୁ କେତେ ରଙ୍ଗ ଆସେ ।

ପ୍ରମ ।—ମୁଁ ରଙ୍ଗ କରୁନାହିଁ । ଯେବେ ଏ ଜୀବନ କଷ୍ଟସ୍ଥ ପ୍ରିୟସହଚରୀର ସ୍ନେହଦ୍ୱାରା ପ୍ରତିପାଳିତ ହୋଇଥିବ ତେବେ ମୁଁ ଯାହା ମୁହଁରେ କହିଲି ତାହା ଆଖିରେ ଦେଖିବ ଦେଖିବ—

[ସୁଲନାର ଗୀତ ଗାଉ ଗାଉ ପ୍ରବେଶ ।

ରାଗିଣୀ ଝିଁ ଝିଁ ଟି-ଖେମ୍ଟା—ତାଳ କବାଲି ।

ଦେଖିବ କେ ଆସ ଏ ଅଯୋଧ୍ୟାପୁରୀ ଧରାଧାମେ,
ପୂରିଛି କୌତୁକ ଦେଖ କର୍ମ୍ମରୁ ରେ ରାମନାମେ । ଘୋଷା ।
କି ମଧୁର ମଧୁମାସ କଶଲୟେ ସୁପ୍ରକାଶ,
ଜଣିଛି ତାକୁ ଏ ରାଜ୍ୟ ଦେଶ ଦେଶ ସୁଲଲାମେ । ୧ ।
ପୂର୍ଣ୍ଣକୁମ୍ଭ ଘରେ ଘରେ, କଦଳୀଶ୍ରେଣୀ ସମ୍ମୁଖରେ,
ଦିବ୍ୟଧାମ ବନ ଶୋଭେ ସାଜ ଶତପୁଷ୍ପଦାମେ । ୨ ।

ସୀତା ।—ଆସ ସୁଜନେ ! ତୁମେ ସାକ୍ଷାତ୍ ସଙ୍ଗୀତରୂପିଣୀ ଗନ୍ଧର୍ବକନ୍ୟା ।

ଊର୍ମି ।—ଏ ଗୀତଟି ନୂଆ ବନ୍ଧା ହୋଇଛପରି ?—

ସୁନ ।—ନୂଆ ହେବ ନାହିଁ ?—

ଋତୁରାଜ ସବୁସମୟେ ନବୀନ ନବବେଶେ ଭବେ ପ୍ରବେଶ ହେଲେ ।
ସାଜଇ ପ୍ରକୃତି ସଙ୍ଗ ନବବେଶେ ନବରଙ୍ଗେ ଧରା ହସଇ ଗେଲେ ॥
ନବବୃନ୍ତେ ଫୁଟେ ନବୀନ କୁସୁମ ନବୀନ ରାଗରେ ରଞ୍ଜିତ ହୋଇ ।
ନବୀନ ପଲ୍ଲବ ନବ ମୁକୁଳିତ ଅଶେଷ ଶୋଭାର ଭଣ୍ଡାର ଥୋଇ ॥
ଦିବ୍ୟ ନବଲତା ନବୀନ ରସିକ ସେନେ କି ଆଲିଙ୍ଗେ ନବଫଳକା ।
ମନୋହର ନବସାଜରେ ସଜାଇ ତେସନ ସାଜଇ ଧରା ରସିକା ॥
ନବୀନ ତେଜରେ ନବପକ୍ଷିରାଜ ନବସ୍ୱରେ ଗୀତ ଗାଆନ୍ତି ମିଳି ।
ତହିଁ କୁହୁସ୍ୱର କରଇ କୋକିଳ ନବୀନ ବାଣରେ ମରମ ଭେଦି ॥
ଏ ନବ କାଳରେ ନବୀନ ଉତ୍ସବ ନବ ଯୁବଗଣ ନବାଉଛନ୍ତି ।
ଯେବେ ନ ଉପୁଜେ ନବଗୀତ ତହିଁ କାହିଁ ହେବେ ତହ ସୁନନ୍ଦା ଚେତ !

ସୀତା ।—ଧନ୍ୟ ସୁନନ୍ଦେ ! ତୁମେ ଏହିରୂପରେ ଜଗତକୁ ଜିଣିବ ।

ଶ୍ରୁତ ।—ଖାଲି ଜଗତକୁ ଜିଣିଚ—ଜଗତକୁ କିଣିକ ନେଇଚ ।

ସୁନ ।—ଆହା—

ମୁଁ କି ଜିଣିପାରେ ଏତେ ଜଗତକୁ କିଣିକ ପାରିବ ଜଗତପ୍ରାଣୀ ।
ଜିଣିଚ କିଣିଚ ଆପଣା ଗୁଣରେ ଏକା ସେହି ଦେଖ ଶ୍ରୀରାମରାଣୀ ॥

ଊର୍ମି ।—ଠିକ୍ କହୁଚ ସୁନନ୍ଦା । ସୁନନ୍ଦା ଆପଣାକୁ ଆପେ ଜିଣିଚ ଆଉ ଆମ ଚାରିଜଣଙ୍କୁ କିଣିନେଇଚ ମାତ୍ର ସୀତାଦେବୀ ଆପଣା ଗୁଣରେ ରାଜ୍ୟଯାକ ଲୋକଙ୍କୁ କିଣି ନେଇଚନ୍ତି ଆଉ ଯଶୋରାଶିରେ ସମସ୍ତଙ୍କୁ ଜିଣିଚନ୍ତି ।

ସୀତା ।—ଭଲି ସୁନନ୍ଦେ ! ତୁମେ ରାଣୀ ବୋଲି କପରି କହିଲ ?

ସୁନ ।—କାହିଁକି—

ଯେ ଜଣେ ସଂସାର ନୃପେ କି ସେ ରାଣୀ ନୁହେ କି ଯେ ଜଣେ ସଂସାରପ୍ରାଣୀ
ପତିବ୍ରତା ସତୀ ପାଶେ ରାଜା ପଦ ନୁହେ କି ସେ ନିଜଗୁଣରେ ରାଣୀ ॥
ସୁନନ୍ଦା ଯେ ସ୍ନେହେ ସୁପ୍ରଭିପାଳିତା ହୃଦସିଂହାସନେ ବସାଇ ଭଜେ ।
ତା ପାଶେ କି ରାଣୀ ନୁହଇ ତେବେ ସେ ଯାହା ଗୁଣ ଗାଇ ପ୍ରେମରେ ମଜେ ॥
ଅଯୋଧ୍ୟାନଗରେ ଯେତେ ଲୋକ ତାର ଗୁଣରାଶି ଗାଇ ଲଭନ୍ତି ସୁଖ ।
ହୃଦସିଂହାସନେ ପୂଜନ୍ତି ବସାଇ ଦର୍ଶନେ ଇଚ୍ଛନ୍ତି ସେ ଚନ୍ଦ୍ରମୁଖ ॥
ସର୍ବପ୍ରକାରରେ ରାଣୀ ହୋଇ ସତ୍ୟ ବସିଛ ସଂସାରେ ଅପୂର୍ବଗୁଣେ ।
କାଇ ଲୋକ-ଦେଖା ସିଂହାସନ-ବସା ରାଣୀ ଏକା ସତ୍ୟ ଆପଣା ଗଣେ ॥

ଗୀତ ।

ରଙ୍ଗିଣୀ ବସନ୍ତ—ତାଲ ଏକତାଲା ।

ଭାରତଭୁବନ-ରାଣୀ ରେ ସଙ୍ଗିନ ।
ଯେ ତୁଇଁ ଭାରତ    ତ୍ରିଭୁବନଶ୍ରେଷ୍ଠ
ତହିଁ ଶ୍ରୀରାମଚରଣୀ ରେ ସଙ୍ଗିନ । ପଦ ।
ଅଯୋଧ୍ୟାନଗରୀ    ହେ ଭାରତଭୂଷଣ
ସାରଥିର ରାଜଧାନୀ ।
ଯେତେ ନରନାଥ    ଶୋଭେ ସେ ଭାରତ
ଶ୍ରୀରାମ ମଉଡ଼ମଣି ରେ । ୧ ।
ସର୍ବଗୁଣେ ଶ୍ରେଷ୍ଠ    ସେହୁ ନରନାଥ
ସମସ୍ତେ ତା ବଶ ମାନି ।
ସେହିନ ଲୋକଙ୍କ    ଧରିଛୁ ତୁ କର
ଜନକଗୁଣେ ପୁଣି ରାଣୀ ରେ । ୨ ।

ସୀତା ।—ସୁନେତ୍ରେ, ତୁମେ ଧନ୍ୟା ! ତୁମ ଗୁଣରେ ସମସ୍ତେ ବିମୋହିତା ।

ସୁନ ।—ପ୍ରମଦେ ! ଏତେ ଶଳଶାଳ ଏଠି କାହିଁକି ହେଉଛି ? ସମୁଦାୟ ଅଯୋଧ୍ୟାନଗରୀ ଯେତେବେଳେ ବାଦ୍ୟାଦି ଆନନ୍ଦଧ୍ୱନିରେ ଝାଙ୍କିପଡ଼ୁଛି, ଯେତେବେଳେ ଗୃହଆଡ଼େ ଆନନ୍ଦକୋଲାହଳରେ ଲୋକେ ମାତି ରହିଚନ୍ତି ସେତେବେଳେ ସୀତାଦେବୀଙ୍କି ଘେନ ତୁମେ ତୁଲକଣ ବର-ଲରେ କି ମନ୍ତ୍ରଣା କରୁଛ ବୁଝିପାରୁ ନାହିଁ ।—ଏ ଆମୋଦରେ ତୁମେ-ମାନେ ଯୋଗ ଦେବ ନାହିଁ କି ?

ପ୍ରମ ।—ଆମୋଦ କରିବାକୁ କାହାର ମନ ନ ହୁଏ ? ମୁଁ ଯେତେ ମନ କରୁଛି ଶୀଘ୍ର ଶୀଘ୍ର କାର୍ଯ୍ୟ ଶେଷ କରିବି ସେତେ କାର୍ଯ୍ୟ ଭିଡ଼ ହେଉ ଅଛି—ଆଉ ଆମୋଦ କରିବି କିସ ?

ଉର୍ମି ।—ସୁନେତ୍ରେ ! ସୀତାଦେବୀଙ୍କି ବୁଝାଇ ଟୋଟାଏ ଆମୋଦର ସୂତ୍ରପାତ କର—ଆମେ ଯୋଗ ଦେବାକୁ ସମ୍ପୂର୍ଣ୍ଣ ସମ୍ମତ ଅଛୁଁ ।

ସୀତା ।—ଉର୍ମିଳି ! ତୁମେ କି ସୁନେତ୍ରା ପରି ବାଗ୍ମୀଣୀ ହେଲ ? ସେତ ଚିରକାଳ ଆମୋଦ କରି ବୁଲୁଛି ତହିଁରେ ପୁଣି ତାକୁ ଆଉ ଟୋଟାଏ ଆମୋଦ କରିବାର ସମୟ ମିଳିଛି । ସେ ଆମୋଦ ବିନା ଆଉ କିଛି ଜାଣେ ନାହିଁ । ମାଡ଼ ସମସ୍ତେ ଯୋଗୀ ହେଲେ ଭଲ ହେବ କିଏ ? ରାଜ୍ୟଯାକ ଲୋକେ

ସିନା ଆମକୁ ସେତ ଆମୋଦ ନଥିବ ମାତ୍ର ଆମର କେତେ ତାର୍ଥ୍ୟ ଅଛି । ଯେଉଁ ଲୋକ ଆମୋଦର ସୃଷ୍ଟି କରେ ସେ ପରକୁ ଆମୋଦିତ କରାଇ ନିଜେ ନିଜ-ପରିଶ୍ରମରେ ଆମୋଦ ଉପଭୋଗ କରେ ।

ସୁନ । — ତା ଯଥାର୍ଥ — ( ଉପବେଶନ ଓ ଗୀତ )

ରାଗିଣୀ ବେହାଗ — ତାଳ ଏକତାଳି ।

ଆହାରେ ବାନ୍ଧବ ଗୀତ କି ଗାଇବ ଲୋ ଗୁଣ-ରତନଗଣ ।
ଖେଳେ ଲହରୀ ଯେସନେ ତରଙ୍ଗ ଲୋ ହୃଦସାଗରେ ସାଜ ।
ଦେଖ ଲୋକେ ମିଳି ଗାଇ ଗୁଣମାଳୀ
ଆନନ୍ଦେ ବତୋର ଆପଣାକୁ ଭୁଲି,
ଆନନ୍ଦରା ସଖି ତାହାଙ୍କ ଆନନେ
ଧନ୍ୟ ସେ ଆନନ ଭବ । ୧ ।
ତୋତେ ସେବା ସର୍ବେ ଆନନ୍ଦି କରିବେ
ନିହାସକେ ଦେଖି ଐଶ୍ୱର୍ଯ୍ୟ ଲଭିବେ —
ତୋର ଶ୍ରମ ସାଇ ଆନନ ଅପାର
ବଫୁଲ କରିବେ ରାଜ । ୨ ।
ଧନ୍ୟ ଧନ୍ୟ ସଖି କେବ କରେ ଲକ୍ଷ୍ମୀ
ସକଳ ସଂସାର—କୁ ଯେ ସ୍ୱୟଂ ଲକ୍ଷ୍ମୀ—
ସେ ସୁଧାବଚନ ଶୁଣି ମୋର ଜାଣ
ସାର୍ଥକ ଜୀବନ ଅଛି । ୩ ।

ପ୍ରମ । — ( ଗତରେ ) କଏ ଆସୁଛି ପରି — ଏତ ତାଙ୍କର ପଦଶବ୍ଦ —

[ ସୁନନା, ଉର୍ମିଳା ଓ ପ୍ରମଦାର ବେଗେ ପ୍ରସ୍ଥାନ ଏବଂ ରାମଚନ୍ଦ୍ରର ପ୍ରବେଶ ।

ରାମ । — ପ୍ରିୟତମେ ! ଭ୍ରାନ୍ତିର ଗୀତବାଦ୍ୟ ଲାଗିଛି (ସୀତାଙ୍କ ପାର୍ଶ୍ୱେ ଉପବେଶନ ।)

ସୀତା । — ( ସଲଜ୍ଜଭାବେ ) ସୁନନା ଚିରକାଳ ସେହିପରି । ଲୋକେ ଶୋକସାଗରରେ ବୁଡ଼ିଥିଲେ ସୁନନା ଯେପରି ଦୁଃଖ ଦୂର କରିପାରେ ସେହିପରି ଲୋକେ ପରିଶ୍ରମରେ ବ୍ୟସ୍ତ ଥିଲେ ତାଙ୍କ ମନକୁ ଆନନ୍ଦରେ ଭସାଇ ଦେଇ ପରିଶ୍ରମ ଲଘୁ କରିପାରେ । — ଆର୍ଯ୍ୟପୁତ୍ର ! ଏତେ ଚିନ୍ତିତ ଦେଖାଯାଉଛ କାହିଁକି ?

ରାମ ।—ଯେତେବେଳେ ପିତାଙ୍କ ଶ୍ରୀମୁଖରୁ କାଲି ଅଭିଷେକ ହେବାର ଆଦେଶ ପାଇଲୁଁ ସେତେବେଳେ ମୋହର ଅନେକ ଚିନ୍ତା ଉଦୟ ହୋଇଛି । ରାଜ୍ୟ-ଯାକ ଲୋକେ ମୋହର ଅଭିଷେକ କାମନା କରନ୍ତି । ରାଜସଭାରେ ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣରୁ ଆର୍ଯ୍ୟଜାତୀୟ, ମ୍ଳେଚ୍ଛଜାତୀୟ ଏବଂ ପାର୍ବତୀୟ ରାଜାମାନେ ଏକତ୍ରିତ ହୋଇଥିଲେ, ଯେତେବେଳେ ପିତା ମୋର ଅଭି-ଷେକର ପ୍ରସ୍ତାବ କଲେ ସେତେବେଳେ ସମସ୍ତେ ଆନନ୍ଦକୋଳାହଳରେ ସଭାସ୍ଥଳକୁ କମ୍ପାଇ ଉଚ୍ଚସ୍ୱରରେ ସମ୍ମତି ପ୍ରଦାନ କରି ମୋହର ଗୁଣଗାନରେ ପ୍ରବୃତ୍ତ ହେଲେ । ପୁଣି ଯେତେବେଳେ ପିତା ମୋତେ ଯୌବ-ରାଜ୍ୟରେ ଅଭିଷିକ୍ତ ହେବାର ଆଦେଶ କଲେ ସେତେବେଳେ ମଧ୍ୟ ରାଜା ଓ ନଗରବାସୀ ଲୋକେ ଆନନ୍ଦକୋଳାହଳରେ ସଭାସ୍ଥଳକୁ କମ୍ପାଇଦେଲେ । ମୁଁ କିପରି ସ୍ୱୟଂ ଶାସନଭାର ଗ୍ରହଣ କରି ଏତା-କହ ରାଜା ଓ ପ୍ରଜାମାନଙ୍କୁ ସନ୍ତୁଷ୍ଟ କରିବି ଏହି ଚିନ୍ତା ମନରେ ଉଦୟ ହୋଇଛି ।

ସୀତା ।—ଆର୍ଯ୍ୟପୁତ୍ର ! ଏ ଚିନ୍ତା କରିବା ଆଦୌ ଉଚିତ ନୁହେଁ । ତୁମର ଗୁଣ-ରାଶି ଚାରିଆଡ଼େ ପଡ଼ି ଲୋକଙ୍କୁ ମୋହିତ କରିଛି ଆଉ ତୁମେ ମଧ୍ୟ ଶାସନ-କାର୍ଯ୍ୟରେ ନିପୁଣତା ଲାଭ କରିଛ । ଏଥକ ଚିନ୍ତାର ପ୍ରୟୋଜନ ମୁଁ ତ ଦେଖୁ ନାହିଁ ।

ରାମ ।—ପ୍ରିୟେ ! ତା ସତ, ତଥାପି ମନ ଚଞ୍ଚଳ ହୋଇଯାଉଛି । ବଳଶ୍ରୀ ଆଉ ଜିତେନ୍ଦ୍ରିୟ ହୋଇ କାମକ୍ରୋଧ ଛାଡ଼ି ନିଜେ ଦୂତଦ୍ୱାରା ପ୍ରକୃତ ବିବ-ରଣ ଅନୁସନ୍ଧାନ କରି ଅମାତ୍ୟପ୍ରଭୃତି ପ୍ରଜାମାନଙ୍କୁ ଅନୁରକ୍ତ କରିବା-କାରଣ ପିତା ଆଦେଶ କରିଛନ୍ତି ମଧ୍ୟ ସେ କହିଛନ୍ତି ଯେ ରାଜା ବହୁ-ତର ଧାନ୍ୟାଗାର, ରତ୍ନାଗାର ଓ ଶସ୍ତ୍ରାଗାର ପରିପୂର୍ଣ୍ଣ ରଖି ପ୍ରଜାମାନଙ୍କୁ ପ୍ରିୟ ଆଉ ଅନୁରକ୍ତ କରି ନ୍ୟାୟସହକାରେ ପୃଥିବୀକି ପାଳନ କରନ୍ତି; ଦେବତାମାନେ ଅମୃତ ଲାଭ କରି ଯେପରି ଆନନ୍ଦରେ ରହିଛନ୍ତି ଭଦ୍ର ପ୍ରଜାମାନେ ସେହିପରି ରାଜାଙ୍କ ଶାସନାନୁସାରେ ଚଳି ସେହିପରି ଆନନ୍ଦିତ ହୁଅନ୍ତି; ଅମୃତ ଲାଭ କରି ଦେବତାମାନେ ଯେପରି ନିର୍ଭୟ ହୋଇ-ଛନ୍ତି ସେହିପରି ଦୁଷ୍ଟଦମନ ଓ ଶିଷ୍ଟପାଳନକାରୀ ରାଜାଙ୍କ ରାଜ୍ୟରେ ପ୍ରଜାମାନେ ନିର୍ଭୟଜୀବନ ହୋଇ ସୁଖ ଭୋଗ କରନ୍ତି । ପିତା ଏହା କହି ନିୟତତ୍ ହୋଇ ସେହିରୂପ ଆଚରଣ କରିବାକୁ ମୋତେ ଆଦେଶ କଲେ । ପିତାଙ୍କ ଆଦେଶ ମୋହର ସର୍ବଥା ପରିପାଳନୀୟ ମଧ୍ୟ ଯଥାସାଧ

ତାହା ପାଳନ କରିବାକୁ ମୁଁ କୁଣ୍ଠିତ ହେବ ନାହିଁ । ଏହା ଛଡ଼ା ପିତା ଆଜ ନାନାବିଧ ଅମଙ୍ଗଳସ୍ୱପ୍ନ ଦର୍ଶନ କରି ମଧ୍ୟ ଘୋରଗର୍ଜନ ସହ ରରେ ଆକାଶରୁ ଉଲ୍କାପିଣ୍ଡମାନ ପଡ଼ୁଥିବା ଏବଂ ବର୍ପାତ ଶବ୍ଦ ହେଉଥିବାରୁ ଆପଣା ଜୀବନ-ପ୍ରତି ସନ୍ଦେହାନ ହୋଇଛନ୍ତି ଆଉ ସେଥିପାଇଁ ଭରତଶତ୍ରୁଘ୍ନ ଏଠାରେ ନ ଥିଲେ ସୁଦ୍ଧା କାଲି ଅଭିଷେକ ହେବାର ଆଜ୍ଞା କରିଛନ୍ତି । ଏହି ସବୁ କାରଣରୁ ମୋ ମନ ଆତୁର ଚିନ୍ତିତ ହୋଇଛି ।

ସୀତା ।—ହଁ ଏହା ଅବଶ୍ୟ ଚିନ୍ତାର ବିଷୟ । ମୋ ମନରେ ସୁଦ୍ଧା ଏ କଥ ଉଦୟ ହୋଇଥିଲା ଯେ କାଲିତ ଏ ଅଭିଷେକର କୌଣସି ନାମଗନ୍ଧ ନ ଥିଲା ଆଜ ଏତେ ଶୀଘ୍ର ଏ କଥା ପଡ଼ି ଉଠିଲ ଅଭିଷେକର ଆୟୋଜନ କାହିଁକି ହେଉଛି ! ଆର୍ଯ୍ୟପୁତ୍ର ! ସେଥିପାଇଁ ଚିନ୍ତା କରିବା ଉଚିତ ନୁହେଁ । ଭଗବାନ୍ ଅଛନ୍ତି ସବୁ କରେଇ ନେବେ—( କିଛି ଚିନ୍ତାନ୍ୱିତା । )

ରାମ ।—ପ୍ରିୟେ ! ତୁମ୍ଭେ ପୁଣି କି ଚିନ୍ତା କରୁଛ ? ତୁମ୍ଭର ଚିନ୍ତା ଦେଖି ମୋ ମନରେ ଚିନ୍ତା ଯେ ଅଧିକ ପ୍ରବଳ ହେବ ।

ସୀତା ।—ନା, ଆର୍ଯ୍ୟପୁତ୍ର ! ମୁଁ ସେପରି କିଛି ଗୁରୁତର ଚିନ୍ତା କରୁ ନାହିଁ । ଯେତେ-ବେଳେ ଜଗଦୀଶ୍ୱର ପରମସୁଖମୟ ଅଭିଷେକକାଣ୍ଡ ଘଟାଇଛନ୍ତି ସେତେ-ବେଳେ ସେ କୌଣସି ବିଘ୍ନ ଘଟାଇବେ ନାହିଁ ଏହା ମୋର ସମ୍ପୂର୍ଣ୍ଣ ବିଶ୍ୱାସ । ମୋର କେବଳ ଏହି ଚିନ୍ତା ହେଉଛି ଯେ ମୁଁ କିପରି ସିଂହାସନରେ ବସିବି ।

ରାମ ।—ପ୍ରିୟେ ! ସେ କି କଥା !—ନୂଆ ହୋଇ ବସିବ କି ? ଏଠିକି ଯେପରି ବସିଛ ସେହିପରି ବସିବ ।

ସୀତା ।—( ଲଜ୍ଜାବନତା ହୋଇ ହାସ୍ୟବଦନେ ) ଏକୁଟିଆ ଏପରି ବସିବାରେ କିଛି ନାହିଁ ଯେ, ଗୁରୁଜନ ଆଉ ନାଗରିକମାନଙ୍କ ସମ୍ମୁଖରେ ବସିବାକଥା କଷ୍ଟତ ।

ରାମ ।—ଏଥିପାଇଁ କାତର ହେଉଛ ?

ସୀତା ।—କାତର ? ଯାହାର ହୃଦୟମଣି ନିକଟରେ ଥିବ ସେ କି କାତର ହୁଏ ? ଏତେଲୋକେ ମୁହଁକୁ ଅନାଇଥିବେ ଏଇଥିକି ସଙ୍କୋଚ ବୋଧ ହେଉଛି ।

ରାମ ।—ତାହା ହେଲେ କି ହେବ, ଶାସ୍ତ୍ର ଆଉ କୁଳପ୍ରଥା ତ ରକ୍ଷିବାକୁ ହେବ । ଆଉ ପ୍ରିୟେ ! ଏ ଗୁରୁତର କାର୍ଯ୍ୟଭାର ବହନ କରିବାକୁ ତୁମ୍ଭେ ଏକା ମୋହର ବଳ—ତୁମ୍ଭେ ଯେବେ ଥରେ ସିଂହାସନ ଛୁଇଁ ନ ଆସିବ ସେ ସିଂହାସନରେ ମୁଁ କି ବସିବାକୁ ଯୋଗ୍ୟ ନୁହେଁ ।

ନେପଥ୍ୟେ ।—( ଶଙ୍ଖଧ୍ୱନି । )

ରାମ ।—ଦ୍ୱାରୀ ଅଛୁ ତ ପର ! ( ଈକଏ ସୂର୍ଯ୍ୟ ବସିବାର । )

[ ଦ୍ୱାରୀର ପ୍ରବେଶ ।

କି ଦ୍ୱାରୀ !

ଦ୍ୱାରୀ ।—( କରଯୋଡ଼ି ) ଗୁରୁଦେବ ଋଷିସହିତ ତୃତୀୟ ଅଗଣାରେ ପ୍ରବିଷ୍ଟ ହୋଇଛନ୍ତି ।

ରାମ ।—( କ୍ଷଣବ୍ୟସ୍ତେ ଉଠି ) ପ୍ରିୟେ ! ମୁଁ ତେବେ ଗୁରୁଦେବଙ୍କୁ ପଛୁର ଆସେଁ ।

[ ଦ୍ୱାରୀରସହିତ ରାମଚନ୍ଦ୍ରର ପ୍ରସ୍ଥାନ ।

ସୀତା ।—( ସ୍ୱଗତ କରଯୋଡ଼ି ) ଭଗବନ୍ ! ପ୍ରକୃତରେ ମୋତେ ଏତେ ଲୋକଙ୍କ ଆଗରେ ପତିପାର୍ଶ୍ୱେ ସିଂହାସନରେ ବସିବାକୁ କେମନ୍ତ ଅଡ଼ୁଆ ଲାଗୁଛି । ଆପଣ ଅଧୀନୀର ଲଜ୍ଜା ନିବାରଣ କରିବେ । ଆଉ ଏତେଦିନଯାଏ ଉର୍ମିଳା ଓ ଅନ୍ୟାନ୍ୟ ଭଗିନୀ ଅଥବା ଯାଆଙ୍କୁ ଯଥାଯୋଗ୍ୟରୂପେ ଆଦର ସ୍ନେହରେ ପାଳିଆସିଲି ଏବେ ରାଜରାଣୀ ହେଲେ କପରି ସେମାନଙ୍କୁ ଅଧିକ ଅଧିକ ସ୍ନେହ ଓ ଆଦରରେ ଆବଦ୍ଧ କରିପାରିବି ଏଥିର ଭାର ମଧ୍ୟ ଆପଣଙ୍କ ପ୍ରତି—ଆପଣ ସବୁ କରିବେ—ଅଧୀନୀ କେବଳ ଉପଲକ୍ଷ୍ୟ ମାତ୍ର !—ଗୁରୁଦେବ ଏତେବେଳେ କାହିଁକି ଆଇଲେ ! ମହାରାଜ କି ଆର୍ଯ୍ୟପୁତ୍ରଙ୍କୁ ପୁଣି ଡକାଇ ପଠାଇଛନ୍ତି ?

[ ବଶିଷ୍ଠ ଓ ରାମଚନ୍ଦ୍ରର ପ୍ରବେଶ ।

ସୀତା ।—( ସସମ୍ଭ୍ରମେ ଉଠି ମହର୍ଷି ବଶିଷ୍ଠଦେବଙ୍କ ପାଦ ବନ୍ଦି ଆସନ ବଢ଼ାଇଦେଇ ଦଣ୍ଡାୟମାନା )

ବଶିଷ୍ଠ ।—( ଆସନରେ ବସି ) ରାମ ! ତୁମ୍ଭର ପିତା ନରପତି ଦଶରଥ ତୁମ୍ଭପ୍ରତି ପ୍ରସନ୍ନ ଅଛନ୍ତି । ଏହେତୁ ଯେପରି ମହୀପତି ନହୁଷ ପ୍ରୀତିସହକାରେ ଯଯାତିଙ୍କି ଅଭିଷିକ୍ତ କରିଥିଲେ ସେହିପରି ସେ କାଲିସକାଳେ ପ୍ରୀତିସହକାରେ ତୁମ୍ଭଙ୍କୁ ଯୌବରାଜ୍ୟରେ ଅଭିଷିକ୍ତ କରିବେ, ତୁମ୍ଭେ କାଲି ଯୌବରାଜ୍ୟ ଲାଭ କରିବ । ଏଣୁ ଆଜି ପତ୍ନୀସହିତ ଉପବାସୀ ହୋଇ ରହ । ( ସୀତାପ୍ରତି ) ବତ୍ସେ ! ତୁମ୍ଭେ ଆଜି ସ୍ୱାମିସହିତ ଉପବାସ କରିବ । କାଲିସକାଳେ ଅଭିଷେକକ୍ରିୟା ହେବ ।—ତୁମ୍ଭେ ଦୁହେଁ ଏକାସନରେ ବସ—ଅମ୍ଭେ ଉପବାସରେ ପ୍ରବୃତ୍ତ କରାଇ ଗମନ କରିବୁଁ ।

ରାମ ଓ ସୀତା ।—( ଏକାସନେ ଉପବେଶନ କରଣ । )

ବଶି ।—( ଉଠି କମଣ୍ଡଳରୁ ପବିତ୍ର ଜଳ ସେଚନ ମନ୍ତ୍ର ପଢ଼ି ଉଭୟଙ୍କ ମସ୍ତକୋପରି ସେଚନ ପୂର୍ବକ ) ରାମ ! ବତ୍ସେ ସୀତେ ! ତୁମ୍ଭେ ଦୁହେଁ ସ୍ନାନ କରି ଆସି ନାରାୟଣ ଦେବଙ୍କ ଉପାସନାରେ ବ୍ରତୀ ହୁଅ । ରାମ ! ତୁମ୍ଭେ ବିଧିପୂର୍ବକ ମସ୍ତକରେ ଆଜ୍ୟପାତ୍ର ଦେଇ ମହାଦେବ ନାରାୟଣ ଉଦ୍ଦେଶ୍ୟରେ ଜ୍ୱଳନ୍ତ ଅଗ୍ନିରେ ଆଜ୍ୟ ହବନ କରି ଅବଶିଷ୍ଟ ଆଜ୍ୟ ଖାଇ ବୈଦେହୀ-ସହିତ ନିୟତମାନସ ଓ ସଂଯତବାକ୍ ହୋଇ ନାରାୟଣ ଦେବଙ୍କୁ ଧ୍ୟାନ କରିବ ଏବଂ ସେହି ବିଷ୍ଣୁଜାଲୟରେ କୁଶଶଯ୍ୟା ପାରି ଶୟନ କରିବ ।—ବର୍ତ୍ତମାନ ଆମ୍ଭେ ଯାଉଛୁଁ ।

ରାମ ଓ ସୀତା ।—( ଯଥାବିଧି ମହର୍ଷିଙ୍କି ଅର୍ଚ୍ଚନା କରଣ । )

[ ବଶିଷ୍ଠର ପ୍ରସ୍ଥାନ ଓ

ପ ଟ କ୍ଷେ ପ ଣ ।

---

## ଚତୁର୍ଥ ଦୃଶ୍ୟ—ରାଜସଭା ।

[ ରାଜା ଦଶରଥ ସିଂହାସନୋପରି ଉପବିଷ୍ଟ । ସିଂହାସନର ପଶ୍ଚାତ୍ ଦେଶରେ ଛତ୍ରଧାରୀ ଓ ସମ୍ମୁଖରେ ଚାମରଧାରୀ ଦଣ୍ଡାୟମାନ ଏବଂ ବଶିଷ୍ଠ, ବାମଦେବ, ସୁମନ୍ତ୍ର, ବିଦୂଷକ ଓ ସଭାସଦ୍‌ବର୍ଗ ଏବଂ ରାଜନ୍ୟମଣ୍ଡଳ ଉପସ୍ଥିତ ।]

ରାଜା ।—ମନ୍ତ୍ରିବର ! ଗୁରୁଦେବ ଏବଂ ମୁନିଶ୍ରେଷ୍ଠ ବାମଦେବ ମହୋଦୟମାନେ ଯେଉଁ ଯେଉଁ ଦ୍ରବ୍ୟମାନ ଯୋଗାଡ଼ କରିବାକୁ କହିଲେ ସେ ସବୁ ଆୟୋଜିତ ହୋଇ ରହିଲାଣି କି ?—ଆଉ ସମୟ ନାହିଁ ।

ସୁମନ୍ତ୍ର ।—ମହାରାଜ ! ତୁମ୍ଭ ଆଜ୍ଞା କେଉଁ କାଳରେ ପାଳନ କରିବାରେ ବିଳମ୍ବ ହୋଇଛି କି ? ତହିଁରେ ପୁଣି ମହାପୁରୁଷ ରାମଚନ୍ଦ୍ରଦେବ ସିଂହାସନରେ ବସିବେ ବୋଲି ସମୁଦାୟ ଅଯୋଧ୍ୟାବାସିମାନେ ମାତି ଉଠିଥିବା ସ୍ଥଳେ ଆମ୍ଭଙ୍କୁ କୌଣସି ଦ୍ରବ୍ୟ ଆୟୋଜନ କରିବାକୁ କଷ୍ଟ ହୋଇ ନାହିଁ । ଆଜ୍ଞାମାତ୍ରକେ ଅତ୍ୟନ୍ତ ଆନନ୍ଦରେ ସମସ୍ତେ ସାହାଯ୍ୟ କଲେ । ସୁନା, ରୁପା, ତମ୍ବା, ଲୁହା ପ୍ରଭୃତି ଧାତୁମାନ, ବିବିଧ ରତ୍ନ, ଆବଶ୍ୟକୀୟ ଜଳ, ସର୍ବୌଷଧି, ଶ୍ୱେତମାଲା, ଘିଅ ମହୁ, ଖଇ, ଅନେକ ସହୋଜାର ଲୁଗା, ରଥ, ସମୁଦାୟ ଅସ୍ତ୍ର ଶସ୍ତ୍ର, ଶୁଭ ଲକ୍ଷଣାକ୍ରାନ୍ତ ଗୋଟିଏ ହାତୀ, ଯୋଡ଼ିଏ ଚାମର, ଯୋଡ଼ିଏ ପଙ୍ଖା, ପତାକା, ପାଣ୍ଡୁରବର୍ଣ୍ଣ ଛତ୍ର, ଅଗ୍ନିପ୍ରାୟ

ପ୍ରସ୍ରୀଥାଳୀ ସୁବର୍ଣ୍ଣନିର୍ମିତ ଶଏ ସଟ, ସୌବର୍ଣ୍ଣଶୃଙ୍ଗଯୁକ୍ତ ଗୋଟିଏ ଷଣ୍ଢ, ଏବଂ ଅଣସ୍ତ୍ର ବ୍ୟାଘ୍ରଚର୍ମ ଏ ସମସ୍ତର ଆୟୋଜନ ହୋଇଛି ଏବଂ କାଲି ସକାଳେ ଏ ସବୁ ଦ୍ରବ୍ୟ ଋଷିଙ୍କ ଅଗ୍ନିହୋତ୍ରଗୃହରେ ଯଥାମତ ସ୍ଥାପନ କରି-ବାକାରଣ ଭୃତ୍ୟମାନଙ୍କୁ ଆଦେଶ କରିଛି ମଧ୍ୟ ଚତୁରଙ୍ଗ ସୈନ୍ୟ ସଜାଇ ଉପସ୍ଥିତ ହେବାକାରଣ ସେନାପତିଙ୍କି ଆଜ୍ଞା ଦେଇଛି । ଅନ୍ତଃପୁର ଓ ନଗରର ଦ୍ୱାର ସବୁ ଚନ୍ଦନଚର୍ଚ୍ଚିତ ପୁଷ୍ପମାଳଦ୍ୱାରା ଶୋଭିତ ଏବଂ ଅତ୍ୟନ୍ତ ସୁଗନ୍ଧ ଧୂପ ଦ୍ୱାରା ସୁବାସିତ କରିବାକାରଣ ମାଳୀ ଓ ଗାର୍ସିଙ୍କି ଆଜ୍ଞା ଦିଆଯାଇଛି ।

ରାଜା ।—ଉତ୍ତମ । ନଗରବାସିଙ୍କ ଆମୋଦର କଅଣ ବନ୍ଦୋବସ୍ତ କରିଛ ?

ସୁମ ।—ମହାରାଜ ! ସେଥିପାଇଁ ଆମ୍ଭ ଲେଶମାତ୍ର ଚିନ୍ତିତ ହେବେ ନାହିଁ । ରାମଚନ୍ଦ୍ରଙ୍କର କାଲି ଅଭିଷେକ ହେବ ବୋଲି ଆନନ୍ଦୋତ୍ସବରେ ମାତିବାପାଇଁ ଦୂତ ଘୋଷଣା ହେବା ସଙ୍ଗେ ସଙ୍ଗେ ନଗରବାସିମାନେ ଯେ ଯାହା ଇଚ୍ଛାମତେ ଦ୍ୱାରେ କଦଳୀଗଛ ଲଗାଇ ଧାନ, ନଡ଼ିଆ, ଆମ୍ବ-ଡାଳ ଦେଇ ଶୁଭମଙ୍ଗଳ ପୂର୍ଣ୍ଣକୁମ୍ଭ ସ୍ଥାପନ କରିବାରେ ବ୍ୟସ୍ତ ହୋଇଗଲେ ।

ରାଜା ।—ଆଜଠାରୁ ?

ସୁମ ।—ମହାରାଜ ! ଯେଉଁ ରାମଚନ୍ଦ୍ରଙ୍କୁ ଲୋକେ ଏତେଦୂର ସ୍ନେହ କରନ୍ତି, ଅଯୋଧ୍ୟା ନଗରୀକୁ ଯେ ଦଣ୍ଡେ ଅନ୍ତର ହୋଇଗଲେ ସେମାନେ ଖିଆ ପିଆ ଭୁଲିଯିବେ—ତାଙ୍କର କାଲି ଅଭିଷେକ ହେବ ଏହା ଶୁଣି କି ଲୋକ-ଙ୍କର ଆନନ୍ଦର ଆଉ ସୀମା ଅଛି ? ଦୂତ ସେମାନଙ୍କୁ ଏପରି ସଙ୍ଗେ ସଙ୍ଗେ କଦଳୀଗଛ ଲଗାଇବା ଇତ୍ୟାଦି ଦେଖି କହିଲା ଯେ କାଲିସକାଳୁ ସେ ସବୁ କରିବ ଆଜି ନାହିଁକି, ମାତ୍ର ସେମାନେ କହିଲେ ନାହିଁକି, ଯେତେ-ବେଳେ ଅଭିଷେକ ହେବାର ଶୁଭବାର୍ତ୍ତା ଘୋଷଣା କରାଗଲା ସେହି-ସମୟରୁ ଆନନ୍ଦୋତ୍ସବ ହେବା ଉଚିତ । ଏହା କହି କାହାରି ଅପେକ୍ଷା ନ କରି ଶୁଭକାର୍ଯ୍ୟରେ ମାତି ଯାଇଛନ୍ତି ।

ବଶି ।—ମହାରାଜ ! ଆମ୍ଭେ ଏହିକ୍ଷଣି ବୈଦେହୀ ଓ ରାମଚନ୍ଦ୍ରଙ୍କ ନିୟମାନୁଯାୟୀ ଉପବାସ କରାଇ ଆସିଲୁଁ ମାତ୍ର ବାଟରେ ଯାହା ଦେଖିଲୁଁ ତହିଁରେ ଅଯୋଧ୍ୟାପୁରୀ ସହଜରେ ଚିହ୍ନାଯିବା ଦୁଷ୍କର ! ନାନାପ୍ରକାର ଆଲୋକ ଓ ଫୁଲମାଳାଦିରେ ନଗରବାସିମାନେ ଆପଣା ଆପଣା ଘରକୁ ସଜାଇ କେହି ଗୀତବାଦ୍ୟ, କେହି ନୃତ୍ୟଗୀତ, କେହି ଅବା ଭୋଜନପାନ ଇତ୍ୟାଦି ନାନାପ୍ରକାର ଆମୋଦରେ ମତ୍ତ ହୋଇଛନ୍ତି—ଯେମନ୍ତ ସତେ ସମସ୍ତଙ୍କ ଘରେ ବିବାହ- ନୈମିତ୍ତିକ-କ୍ରିୟା ସମାଧା ହେଉଛି ।

ବାମ ।—ଆଜ ତ ଅଯୋଧ୍ୟାପୁରୀ ମର୍ତ୍ତ୍ୟଧାମ ପରି ଦିଶୁ ନାହିଁ—ସାକ୍ଷାତ୍ ସ୍ୱର୍ଗର ଅମରାବତୀ ପ୍ରାୟ ଶୋଭା ପାଉଛି । ସମସ୍ତଙ୍କ ମୁଖରେ ହର୍ଷର ଚିହ୍ନ, ସମସ୍ତଙ୍କ ମୁଖରେ ଆନନ୍ଦ ପରିପୂର୍ଣ୍ଣ । ସମସ୍ତେ ଆମୋଦରେ ଉନ୍ମତ୍ତ ହୋଇଛନ୍ତି । ଏ ସବୁରୁ ଯେମନ୍ତ ମହାରାଜଙ୍କ ଆଜ୍ଞା ଆଲୋଚିତ ହୋଇଥିବାର ପରିଚୟ ମିଳୁଛି ସେମନ୍ତ ଅଶେଷ ଗୁଣସମନ୍ୱିତ ରାମଚନ୍ଦ୍ରଙ୍କଠାରେ ଲୋକଙ୍କର ପ୍ରଗାଢ଼ ଶ୍ରଦ୍ଧା ଓ ଭକ୍ତି ଥିବାର ଜଣାଯାଉଛି ।

ସଜା ।—ବଡ଼ ସୁଖର ବିଷୟ । ପ୍ରଜାମାନେ ରାଜାଜ୍ଞା ଏପରି ଭାବରେ ଗ୍ରହଣ କରିବା ଅତ୍ୟନ୍ତ ଆନନ୍ଦର ବିଷୟ ଅଟେ !

ବଶି ।—ଏଥିଁ ବଳି ଆନନ୍ଦର ବିଷୟ ଅଛି ? ରାଜ୍ୟବାସୀ ପ୍ରଜାମାନେ ଏବେ ରାଜଭକ୍ତିଗୁଣରେ ବିଖ୍ୟାତ, ତହିଁରେ ପୁଣି ମହାରାଜଙ୍କ ପ୍ରଜାଶାସନ-ପ୍ରଣାଳୀ ପୁତ୍ରପାଳନଠାରୁ ବଳିଛି । ଯେ ଇକ୍ଷ୍ୱାକୁବଂଶର ମର୍ଯ୍ୟାଦା ରକ୍ଷା କରି ନିଜର ବାର୍ଦ୍ଧକ୍ୟାନୁଭବରେ ନିଃସ୍ୱାର୍ଥଭାବେ ସିଂହାସନ ତ୍ୟାଗ-ପୂର୍ବକ ପୁତ୍ରକୁ ତାହା ଦାନ କରି ପ୍ରଜାପାଳନର ପ୍ରକୃଷ୍ଟ ଉଦାହରଣ ଦେଖାଉଛନ୍ତି, ଯେ ନାନାବିଧ ବିଷୟଭୋଗଲାଳସା ଏକାବେଳକେ ତ୍ୟାଗ କରି ନିଜର ନାନା ବିଦ୍ୟାବିଶାରଦତା ପ୍ରକାଶ କରୁଛନ୍ତି, ଯେ ବିପୁଳ ଅର୍ଥ ବ୍ୟୟ କରି ଶତ ଶତ ଭୂରି-ଦକ୍ଷିଣ ଯଜ୍ଞର ଅନୁଷ୍ଠାନ ଏବଂ ଅର୍ଥୀମାନଙ୍କୁ ଚିରକାଳ ଅଭିଳଷିତ ବିଷୟ ଦାନ କରିଆସିଛନ୍ତି ଆଉ ଯେ ଭୂମଣ୍ଡଳରେ ଅନୁପମ ଗୁଣସମନ୍ୱିତ ପୁତ୍ର ପାଇ ଦେବତା, ଋଷି, ବ୍ରାହ୍ମଣ, ପିତୃବର୍ଗ ଏବଂ ଆତ୍ମାର ଋଣରୁ ବିମୁକ୍ତ ହୋଇଛନ୍ତି ମଧ୍ୟ ଯେ ପ୍ରଜାଙ୍କର ମଙ୍ଗଳକାମନା କରି ପ୍ରଜାବତ୍ସଳ ରାମଙ୍କୁ ଯୌବରାଜ୍ୟରେ ଅଭିଷିକ୍ତ କରାଇବାକୁ ବସିଛନ୍ତି, ପ୍ରଜାମାନେ ତାହାଙ୍କ ଆଜ୍ଞା ସାଧନରେ ପ୍ରତିପାଳନ କରିବାକୁ ଯେ ବ୍ୟସ୍ତ ହେବେ ଏଥିରେ ବୈଚିତ୍ର୍ୟ କି ଅଛି ?

ରାଜା ।—ସବୁ ଆପଣମାନଙ୍କର ଅନୁଗ୍ରହ ।

ବାମ ।—ମହାରାଜ ! ରାମଚନ୍ଦ୍ରଙ୍କ ଗୁଣରାଶି କାହାରିକି ଛପା ନାହିଁ ! ଶ୍ରୀରାମ ସତ୍ୟପରାୟଣ ଏବଂ ସତ୍ୟବ୍ୟବହାରରେ ସାଧୁପୁରୁଷ ବୋଲି ଲୋକରେ ବିଖ୍ୟାତ ଏବଂ ସାକ୍ଷାତ୍ ଧର୍ମ ଓ ଅର୍ଥର ନିଦାନସ୍ୱରୂପ । ସେ କ୍ଷମାରେ ପୃଥିବୀ, ବୁଦ୍ଧିରେ ବୃହସ୍ପତି ଏବଂ କାର୍ଯ୍ୟରେ ଶଚୀପତି ପ୍ରାୟ । ସେ କାହାରି ପ୍ରତି ଅସୂୟା ନ ରଖି ସମସ୍ତଙ୍କୁ ସାନ୍ତ୍ୱନା କରନ୍ତି । ତାଙ୍କ ବୁଦ୍ଧି କେବେ ବ୍ୟାକୁଳ ହୁଏ ନାହିଁ । ତାଙ୍କ ସ୍ୱଭାବ ମୃଦୁ ଓ ଶାନ୍ତ ଏବଂ ସେ ପ୍ରିୟବାଦୀ । ସେ ବହୁଶ୍ରୁତ ବୃଦ୍ଧବ୍ରାହ୍ମଣଙ୍କ ଉପାସନା କରନ୍ତି ସୁତରାଂ ତାଙ୍କ ତେଜ

କୀର୍ତ୍ତି ଓ ଯଶ ଉତ୍ତରୋତ୍ତର କ୍ରମେ କ୍ରମେ ବଢ଼ୁଛି । ସେ ଦୈବ, ଅସୁର ଓ ମାନୁଷ ସମସ୍ତ ଅସ୍ତ୍ର ଅବଗତ ଅଛନ୍ତି ଏବଂ ଯଥାକ୍ରମରେ ବେଦ-ବେଦାଙ୍ଗ ପଢ଼ିଛନ୍ତି ସୁତରାଂ ଶବ୍ଦବିଦ୍ୟାରେ ଭୂମଣ୍ଡଳରେ ଶ୍ରେଷ୍ଠତା ଲାଭ କରିଛନ୍ତି । ସେ ଯୁଦ୍ଧକୁ ଯାଇ ନ ଜିଣି ଫେରନ୍ତି ନାହିଁ ଏବଂ ଫେରି ଆସି ସ୍ୱଜନପ୍ରାପ୍ତ ନଗରବାସିଙ୍କ ଭାର୍ଯ୍ୟା, ପୁତ୍ର, ଭଗ୍ନୀ, ଶିଷ୍ୟ ଏବଂ ଗୁରୁଜନମାନଙ୍କ କୁଶଳ ପଚାରନ୍ତି ଏବଂ ସମସ୍ତଙ୍କ ସଙ୍ଗେ ଯଥାଯୋଗ୍ୟ ପ୍ରିୟସମ୍ଭାଷଣ କରନ୍ତି । ଲୋକଙ୍କ ବିପଦରେ ସେ ଯେପରି ଦୁଃଖିତ ହୁଅନ୍ତି ସେହିପରି ସମ୍ପତ୍ତିକାଳରେ ପିତା ପ୍ରାୟ ସନ୍ତୁଷ୍ଟ ହୁଅନ୍ତି । ସେ ଯେପରି ମିଷ୍ଟ ହାସ୍ୟ କରି କଥା କହନ୍ତି ତହିଁରେ କିଏ ମୁଗ୍ଧ ନ ହେବ ? ମହାରାଜ ରାମଚନ୍ଦ୍ର ବୃହସ୍ପତିପ୍ରାୟ ନିଜ-ମତ-ସଂସ୍ଥାପନାର୍ଥ ଉତ୍ତରୋତ୍ତର ହେତୁବାଦ କହିବାକୁ ସମର୍ଥ ଅଥଚ ବୃଥା କଳହ କରି ନିଜମତ ସ୍ଥିର ରଖିବାକୁ ତାଙ୍କର ଅଭିରୁଚି ନାହିଁ । ସେ ସମସ୍ତଙ୍କୁ କଲ୍ୟାଣପଥରେ ଚଳାନ୍ତି । ସେ ବୀର୍ଯ୍ୟ ଓ ପରାକ୍ରମରେ ସାକ୍ଷାତ୍ ବିଷ୍ଣୁ ସ୍ୱରୂପ । ସେ ପ୍ରଜାପାଳନରୀତି ସମ୍ୟକ୍ ଅବଗତ ହୋଇଛନ୍ତି । ବିଶେଷତଃ ତାଙ୍କର କୌଣସି ଇନ୍ଦ୍ରିୟ ବିଷୟାନୁରାଗରେ ଆବଦ୍ଧ ନୁହେ ତଥା ତାଙ୍କର ନିରର୍ଥକ କ୍ରୋଧ ବା ଚିତ୍ତପ୍ରସାଦ ହୁଏ ନାହିଁ । ଏଭଳି ପୁତ୍ର ପ୍ରାପ୍ତ ହେବା ଯେପରି ମହାରାଜଙ୍କର ଅତୁଳ ସୌ-ଭାଗ୍ୟର ପରିଚାୟକ ସେହିପରି ସେଭଳି ରାଜା ପାଇବା ମଧ୍ୟ ଲୋକେ ଆପଣାର ସୌଭାଗ୍ୟ ବୋଲି ମଣିଛନ୍ତି ।

ରାଜା ।—ଆପଣମାନଙ୍କ ଆଶୀର୍ବାଦରୁ ସିନା । ରାମ ଏଭଳି ଗୁଣବାନ୍ ହୋଇ ନ ଥିଲେ ଆମ୍ଭେ କି ତାହାଙ୍କୁ ସିଂହାସନରେ କେବେ ଅଭିଷିକ୍ତ କରାଇଥାନ୍ତୁ ? ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ଏମାନେ ସମସ୍ତେ ରାମଙ୍କୁ ପ୍ରଗାଢ଼ ଭକ୍ତି କରନ୍ତି ଏବଂ ରାମ ମଧ୍ୟ ସେମାନଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରେ । ରାମ ରାଜା ହେଲେ ସେମାନଙ୍କୁ ଯେପରି ସୁଖରେ ପ୍ରତିପାଳନ କରିବ ସେହିପରି ସେମାନେ ମଧ୍ୟ ରାମର ଆଜ୍ଞାନୁବର୍ତ୍ତୀ ହୋଇ ପରମସୁଖୀ ହେବେ ଏହା ଆମ୍ଭର ସମ୍ପୂର୍ଣ୍ଣ ବିଶ୍ୱାସ ।

ବଶି ।—ତାହା ଆଉ କହିବାକୁ—ଜଗଜ୍ଜନମାନ୍ୟ ଲୋକପୂଜିତ ରାମଚନ୍ଦ୍ର, ଦେବ-ଦାନବ-ଗନ୍ଧର୍ବାଦି ସମସ୍ତ ଲୋକଙ୍କରେ ଉତ୍ତମଧିରେ ଯେ ଖ୍ୟାତି ଲଭିଛନ୍ତି, ମହାରାଜ ! ତାହାଙ୍କୁ ଉତ୍ତମ ଜଣାଯାଏ ଇକ୍ଷ୍ୱାକୁବଂଶ ତାଙ୍କଦ୍ୱାରା ବିଶେଷରୂପେ ଉଜ୍ଜ୍ୱଳ ହେବ ଏଥିରେ ସନ୍ଦେହ ନାହିଁ ।

କୁବ୍ ।—( ସ୍ୱଗତ ) ଓଃ ! ଏ ଭଲା ନିଷ୍ଠୁର ନିଷ୍ଠୁର ଲଗେଇଲେ—ତାହିଁ ଅଭି-

ଖେଳକ୍ରିୟା ଉଦ୍ଦେଶ୍ୟରେ ନୃତ୍ୟଗୀତବାଦ୍ୟ ଇତ୍ୟାଦିର ଧୂମ ଲାଗିବ ନା ଏ ରାଜସଭାରେ କଷ୍ଟର କଷ୍ଟର କରି ସମୁଦାୟ ସମୟ କଟେଇ ଦେବାକୁ ହେଲଲେ ଯେ ! ( ଦୀର୍ଘନିଶ୍ୱାସ ) ।

ରାଜା ।—କି ବୟସ୍ୟ ! ଏତେବଡ଼ ନିଶ୍ୱାସଟା ପକାଇଲ ଯେ—କି ଭାବୁଛ ବସି ?

ବିଦୂ ।—ମହାରାଜ ! ଯେଉଁଠି ସ୍ୱୟଂ ଗୁରୁଦେବ ଆଉ ତାଙ୍କ କୁଳନନ୍ଦନ ମହର୍ଷି ବାମଦେବ ବିଦ୍ୟମାନ ସେଠି ଗରିବ ବ୍ରାହ୍ମଣର ପ୍ରତିପତ୍ତି ଅଛି କି ? ଅଭିଷେକର ଆୟୋଜନର କଥାଟା ପଡ଼ିଥିଲା, ଭଲ ଶୁଣିବାକୁ ଦଧି—ସେ ବାଟକୁ ଛାଡ଼ ହେଲ ଗଲେଣି ଯେ ଯାଇଁ ପାଞ୍ଚକୋଶରେ !

ବଶି ।—ବିଦୂଷକ ମହାଶୟ ! ଆମ୍ଭେ ତୁମ୍ଭର ଅଭିପ୍ରାୟ ବୁଝିଲୁଁ ।

ବିଦୂ ।—ଆପଣ ଗୁରୁ, ବିଦଗ୍ଧ, ବର୍ତ୍ତମାନ ମନୁ ଜାଣି ପାରନ୍ତି ମୋ ଅଭିପ୍ରାୟଟା ବୁଝି କି ପାରିବେ ନାହିଁ କି ?—ମୁଁ ଭାବୁଥିଲି ଯେ ଲଡୁଟାଏ ଦୁଧପାଏ—ବସି ଖାଇବେ ବର୍ଷେ ଯାଏ—ଆପଣମାନେ କହିଲ, ସେଠି ବ୍ରାହ୍ମଣ ଭୋଜନର କଥାଟା ପଡ଼ିବ ନାହିଁକି ?

ବଶି ।—ମହାରାଜ ! ଏ ପେଟୁକ ବ୍ରାହ୍ମଣକୁ କାଲି ସମ୍ମାନ ପାଇବେଟିକି ?

ରାଜା ।—ଯେଉଁ ଘରେ ଦଧି ମିଷ୍ଟାନ୍ନ ଓ ଅପର ଆହାରୀୟ ଦ୍ରବ୍ୟମାନ ରହିବ ସେହି ଘରେ ତାଙ୍କୁ ମାଲିକ କରି ବସାଇବି ।—କି ବୟସ୍ୟ ?

ବିଦୂ ।—ସ୍ୱହସ୍ତରେ— ରାଜା ନ ହେଲେ କି ଏଭଳି ବିଚାର ଆଉ କେହି କରି ପାରିବେ ? ମାତ୍ର ମହାରାଜ ! ତାହାହେଲେ ମୋତେ ଗୋଟିଏ ସହକାରୀ ଦେବାକୁ ଆଜ୍ଞା କରିବେ ।

ରାଜା ।—କାହିଁକି ?

ବିଦୂ ।—ସେ ଭଣ୍ଡାର ଜଗି ବସି ରହିବ ଆଉ ମୁଁ (ମୁଖ ଓ ହସ୍ତଭଙ୍ଗୀ କରି) ଖାଉଥିବି ! ହାଃ ହାଃ !

ରାଜା ।—ହଁ ମନ୍ତ୍ରିବର ! ବ୍ରାହ୍ମଣ ଭୋଜନାଦିର କିରୂପ ଆୟୋଜନ ହେଲା ?

ସୁମନ୍ତ୍ର ।—ମହାରାଜ ! ଅନ୍ନ, କ୍ଷୀର ଓ ଦଧି ଇତ୍ୟାଦିର ଏତେ ଆୟୋଜନ କରି ଦିଆ ଯାଇଛି ଯେ ତହିଁରେ ଲକ୍ଷେ ବ୍ରାହ୍ମଣ ପର୍ଯ୍ୟାପ୍ତରୂପେ ଭୋଜନ କରି ପରିତୃପ୍ତ ହୋଇ ପାରିବେ । କାଲି ସକାଳେ ମୁଖ୍ୟ ବ୍ରାହ୍ମଣମାନଙ୍କୁ ସତ୍କାର କରି ପ୍ରଚୁର ଦକ୍ଷିଣା ସହିତରେ ଘୃତ ଦଧି ଆଉ ଫଳ ଦିଆଯିବାର ବନ୍ଦୋବସ୍ତ ହୋଇଛି । ସୂର୍ଯ୍ୟୋଦୟ ହେବା ମାତ୍ରକେ ସ୍ୱସ୍ତିବାଚନ ହେବାର ଥିବାରୁ ବ୍ରାହ୍ମଣମାନଙ୍କୁ ନିମନ୍ତ୍ରଣ କରାଯାଇ ଏହି ସମୟେ ତାଙ୍କୁ ବୁଝାଇ ଦିଆଯାଇଛି ମଧ୍ୟ ଅଧିବାସାଦି ପ୍ରସ୍ତୁତ ହୋଇ ରଖାଯାଇଛି ।

ରାଜପଥ ସର୍ବତ୍ରରେ ପାଣି ସିଞ୍ଚା ହୋଇ ପତାକା ଉଡ଼ାଇ ଦିଆଯାଇଛି । ନର୍ତ୍ତକୀମାନେ ଶୋଭନ ଅଳଙ୍କାରରେ ଭୂଷିତା ହୋଇ ଅନ୍ତଃପୁରର ଦ୍ୱିତୀୟ ପ୍ରାଙ୍ଗଣରେ ଅବସ୍ଥାନ କରୁଛନ୍ତି; ବଳବାନ୍ ଶୌର୍ଯ୍ୟଶାଳୀ ବୀରମାନେ ଶୁଦ୍ଧବସ୍ତ୍ର ଏବଂ କବଚ ପିନ୍ଧି କଟିରେ ଖଡ୍ଗତରବାରି ବାନ୍ଧି ଅନ୍ତଃପୁରର ମହୋତ୍ସବବିଶିଷ୍ଟ ପ୍ରାଙ୍ଗଣମଧ୍ୟରେ ଅବସ୍ଥିତ ହୋଇଛନ୍ତି ଏବଂ ଅଯୋଧ୍ୟା ନଗରୀରେ ଯେଉଁ ଯେଉଁ ସ୍ଥାନରେ ଦେବାଳୟ ଓ ଚୈତ୍ୟ ବୃକ୍ଷ ଅଛି ସେ ସମସ୍ତ ସ୍ଥାନରେ ଉପଯୁକ୍ତ ବ୍ୟକ୍ତିମାନେ ଦାନ ଦକ୍ଷିଣା ସହିତ ଗନ୍ଧ ଓ ପୁଷ୍ପ ପ୍ରଭୃତି ପୂଜାଦ୍ରବ୍ୟ ଏବଂ ଅନ୍ୟାନ୍ୟ ଭକ୍ଷ୍ୟଦ୍ରବ୍ୟ ସବୁ ଯେପରି ଉପସ୍ଥିତ ରହି-ବାକୁ ଆଜ୍ଞା ଦିଆଯାଇଛି । ବାହାର ପଦ୍ଧତିରେ ଦୀନଦୁଃଖୀ ଅନ୍ଧ ଖଞ୍ଜମାନଙ୍କ ନିମିତ୍ତ ଅପର୍ଯ୍ୟାପ୍ତ ଖାଦ୍ୟବସ୍ତ୍ରାଦିର ଆୟୋଜନ ହୋଇଛି—ଯେ ଯାହା ଚାହିଁବ ତାହାକୁ ତାହା ଦିଆଯିବ । କାଲି ରାତିକୁ ନାନାପ୍ରକାର ଆତସବାଜି ଓ ଆଲୋକସ୍ତମ୍ଭାଦିର ବନ୍ଦୋବସ୍ତ ହୋଇଛି ଏବଂ ଆଜି ଯେପରି ନଗରର ସ୍ଥାନେସ୍ଥାନେ ନୃତ୍ୟଗୀତାଦିର କଳ୍ପନା ହୋଇଛି କାଲି ତହୁଁ ବଳି ଅଧିକ-ତର ଆଡ଼ମ୍ବରର ସୁବିଧା କରାଯାଇଛି ।

ରାଜା ।—ଉତ୍ତମ—ସୁମନ୍ତ୍ରଙ୍କ ମନ୍ତ୍ରୀ ଥାଉଁ ଦଶରଥରାଜା କୌଣସି କାର୍ଯ୍ୟ କରିବାକୁ ଡରଇ ନାହିଁ ।

ସୁମ ।—( କୃତାଞ୍ଜଳିପୁଟେ ) ଏ ମହାରାଜଙ୍କ ଅନୁଗ୍ରହ । ଜୀବନ ଉପରେ ପଡ଼ିଲେ ସୁଦ୍ଧା ମହାରାଜଙ୍କ ଆଜ୍ଞା ପାଳନ କରିବାକୁ ଦାସ ତିଳମାତ୍ର କୁଣ୍ଠିତ ନୁହେ ।

ରାଜା ।—କି ବୟସ୍ୟ—ଆଉ କିଛି ବାକି ରହିଲା କି ?

ବିଦୂ ।—ମହାରାଜ ! ଆଉ କିଛି ନାହିଁ—ଅଧୀନର ଉଦରର ମଧ୍ୟ ବନ୍ଦୋବସ୍ତଟା ଯେପରି ହୋଇଛି ସେଥିରେ କିଛି କଳ୍ପନା ନାହିଁ ଆଉ କେବଳ ଯୋଡ଼ିଏ କଥାର ଅଭାବ ଅଛି ।

ରାଜା ।—କି ଯୋଡ଼ିଏ କଥା ?

ବିଦୂ ।—ମହାରାଜ ! ରାଜମାର୍ଗର ଉଭୟପାର୍ଶ୍ୱରେ ନାଗରିକମାନେ ଆପଣା ଆପଣା ଦ୍ୱାରରେ ଦୀପମାଳା ରଖି ଦେବାରେ ପତାକା-ବିଭୂଷିତ ରାଜମାର୍ଗ ଅତି ଅପୂର୍ବ ଶ୍ରୀ ଧାରଣ କଲା । ମୁଁ ଭିତରର ହୋଇ ସଭାକୁ ଆସିବାବେଳେ ବାହାରିପଡ଼ି ନଗରର ଏ ଅପୂର୍ବ ଶୋଭା ଦେଖିଲି ବେଳକୁ ଆଖି ଝାଉଁ ଝାଉଁ ହୋଇଗଲା; ତହୁଁ ବ୍ରାହ୍ମଣୀକି ତାହା ଦେଖିବା ପାଇଁ ପୁଣି ଭିତରକୁ ଯାଆନ୍ତେ ଦେଖେଁ ଯେ ବ୍ରାହ୍ମଣୀ ବେଣୀ ଲଣ୍ଡଭଣ୍ଡ ହୋଇ ଦୀପାଳୀଗୁଡ଼ିଏ

ଦୁଆରେ ଦେବାପାଇଁ ସଜାଡ଼ ଅଣୁଛୁ । ସ୍ତ୍ରୀ ଦେଖି ମୋ ମନଟା ଭୋଳ ହୋଇ ଏତେବେଳକେ ସ୍ୱର୍ଗକୁ ଉଡ଼ିଗଲା । ମାତ୍ର ମହାରାଜ, ସେ ପାପ-ଆଲୁଅରେ ସେ ଅପୂର୍ବ ଠାଣିକ ଦୁଇକଥାର ଅଭାବ ଥିବାରୁ ଦେବତେବେଳୁଁ ମନେ କରିଥିଲି ଯେ ବାଗ ଦେଖି ଏକଥାଟା ମହାରାଜଙ୍କ ଛାମୁରେ ଜଣାଇବା ।

ବଶି ।—ଏତ ଭଲ ପାଗଲ ବ୍ରାହ୍ମଣ !

ବଦୂ ।–(ସ୍ୱଗତରେ) ମୁଁ ପାଗଲ—ତେବେ ଆଉ ଏଠି ବସିବାର କି ଆବଶ୍ୟକ ଅଛି । ( ଗମନୋଦ୍ୟତ )

ରାଜା ।—ବସ ବସ ବୟସ୍ୟ ! କହ ତୁମ୍ଭ କଥା । ଗୁରୁଦେବଙ୍କ କଥାରେ ରୁଷୁଛ ।

ବଦୂ ।—ମହାରାଜ ! ଏ ଋଷିଗୁଡ଼ାଙ୍କୁ ଛାମୁ ସଙ୍ଗରେ ବସାଇବା ଭଲ ହୋଇନାହିଁ । ଯେତେବେଳେ ଠାକୁରପୂଜା ବା ଯାଗ ଯଜ୍ଞ ହେବ ଡାକିବେ, ମାହାଲଅ ଏ ଜଙ୍ଗଲିଙ୍କି ଡାକ ପକ୍ଷ ବଣ୍ଟୁର ! କଥାଟାଏ ପଡ଼ିଛି—ନିଜେ ମହାରାଜ ଶୁଣିଛନ୍ତି କହ କନ୍ଦୁନାହାନ୍ତି, ଏ କହିଲେ ପାଗଲ । ଲୁଗାଛାଡ଼ ଲେଙ୍ଗୁଟି ମାରିବେ, ଚନ୍ଦନ ଛାଡ଼ ଭସ୍ମ ଲେପିବେ—ଏ ପାଗଲ ନୁହନ୍ତି ଆମେ ପାଗଲ ।

ବଶି ।—ହେଉ ହେଉ— ତୁମ୍ଭ କଥାଟା କହିଯାଅ ।

ବଦୂ ।—ମହାରାଜ ! ଏ ଉତ୍ସବ ପାଇଁ ବ୍ରାହ୍ମଣୀକ ଫୁଲମଲଥ ଧାରିଲେଣ୍ଟେ ଅଛି ଫୁଲମନଥ ଅଲଙ୍କାର କିଛି ନ ହେଲେ ମୁଁ ତାକୁ ସ୍ୱପନ ଦେଖିବାକୁ ଦେବ ନାହିଁ ।

ରାଜା ।—ଏହି କଥା ? ଆଛା ମନ୍ତ୍ରିବର ! ଏହିକ୍ଷଣି ସନ୍ଧ୍ୟା ଉଙ୍ଗ ହେଲେ ଏହାଙ୍କ ଘରକୁ ବନାରସୀ ଶାଢ଼ୀ ଓ ଏକସାଙ୍ଗ ସୁବର୍ଣ୍ଣର ମଣିମୟ ଅଲଙ୍କାର ଏବଂ ଗୋଟିଏ ସୁବର୍ଣ୍ଣଥାଳୀ ପୂର୍ଣ୍ଣ କରି ମିଷ୍ଟାନ୍ନ ପଠାଇ ଦେବ ।

ବଦୂ ।—ସେ ମିଷ୍ଟାନ୍ନଥାଳଟା ମୋ ହାତରେ ଦେବ । (ଉଚ୍ଚହାସ୍ୟ)

ନେପଥ୍ୟେ ।—( ଅନେକ ରମଣୀକଣ୍ଠନିଃସୃତ ଗୀତ । )

ରାଜା ।—ଏ କି ?

ସୁମନ୍ତ୍ର ।—ମହାରାଜ ! ନଗରବାସିନୀ ରମଣୀଗଣ ରାମଚନ୍ଦ୍ରଙ୍କ ମଙ୍ଗଳକାମନାରେ ତୁଣ୍ଡିତୁମ୍ଭ ସେନ ଗୀତ ଗାଇ ଏବାଟେ ଚଣ୍ଡୀଦେବୀଙ୍କ ପୂଜା କରିବାକୁ ଯାଉଛନ୍ତି । ଯେତେ ଜାତି ଅଛନ୍ତି ସମସ୍ତେ ସ୍ୱତନ୍ତ୍ର ସ୍ୱତନ୍ତ୍ର ଦଳ ବାନ୍ଧି ଯାଉଛନ୍ତି—ସୁସଜ୍ଜିତ ନଗରମଧ୍ୟରେ ତାହା ଦେଖିବାକୁ ବଡ଼ ଚମତ୍କାର ହୋଇଛି ।

ରାଜା ।—ଏଥିଁ ନଗରବାସୀ ପ୍ରଭୃତିଠାରୁ ସ୍ତ୍ରୀ ପର୍ଯ୍ୟନ୍ତ ସମସ୍ତଙ୍କର ଅପାର ଆନନ୍ଦର ପରତତ୍ୱ ମିଳୁଛି । ଗୁରୁଦେବ ! ଏହା ଦେଖି ଜୀବନ ସାର୍ଥକ ହେଲା !

ବଶି ।—ମହାରାଜ ! ଏହିପରି ଭାବରେ ଜୀବନ କଟାଇବା ଧନ୍ୟ !

ବିଦୂ ।—ମହାରାଜ ! ଆଉ ଗୋଟିଏ କଥା ଅଛି ଦୋଷ କ୍ଷମା ହେଲେ କହିବ ।

ରାଜା ।—କହ ବୟସ୍ୟ— ତୁମର ଦୋଷ କେବେ ଧରା ଯାଇଥାଏ ?

ବିଦୂ ।—ମହାରାଜ ! ନଗରର ଚତୁର୍ଦ୍ଦିଗରେ ଆମୋଦ ଲାଗିଛି, ଏଣିକି ଉତ୍ସବ ମଧ୍ୟ ଦେଖିବା ଦୁଷ୍କର । ମାତ୍ର ଏଡ଼େବଡ଼ ଉତ୍ସବଟାରେ ଆଜ ରାଜସଭା ଥଣ୍ଡା ହୋଇ ରହିଲେ ଚଳିବ କି ? ଏଠି କିଛି ନୃତ୍ୟଗୀତ ନ ହେଲେ ମୁଁ ଯାଇ ବ୍ରାହ୍ମଣୀକି ସହର କି ସମ୍ବାଦ ଦେବି ?

ରାଜା ।—ଠିକ କଥା । ମନ୍ତ୍ରିବର ବୟସ୍ୟଙ୍କର ଅଭିଳାଷ ପୂର୍ଣ୍ଣ କରିବା ଉଚିତ ଅଟେ ।

ସୁମ ।—ଯେ ଆଜ୍ଞା । ଅଧୀନ ସେଥିର ପୂର୍ବୁ ବନ୍ଦୋବସ୍ତ କରିଛି କେବଳ ଶ୍ରୀମୁଖରୁ ଆଦେଶର ଅପେକ୍ଷା ଥିଲା ।

ରାଜା ।—ତୁମ୍ଭେ ଧନ୍ୟ ।

ବିଦୂ ।—ମହାରାଜ ! ଏ ବନ୍ଦୋବସ୍ତ କରିବାରୁ ମନ୍ତ୍ରିବର ମୋଠାରେ ଋଣୀ ଅଛନ୍ତି ସୁତରାଂ ସେ ଯେଉଁ ଧନ୍ୟବାଦଟା ପାଇଲେ ମୁଁ ତହିଁର ଅଧିକାରୀ— ଅତଏବ ମୁଁ ଧନ୍ୟ ! ( ଉଚ୍ଚହାସ୍ୟ । )

ରାଜା ।—ବୟସ୍ୟ—ତୁମ୍ଭଙ୍କୁ କଥାରେ କିଏ ପାରିବ ?—ତୁମ୍ଭେ ସର୍ବତୋଭାବେ ଧନ୍ୟ !

ବିଦୂ ।—( ଡେଇଁଉଠି ) ଜୟ ବିଦୂଷକ ବାହାଦୂର କି ଜୟ ! ( ସମସ୍ତଙ୍କର ହାସ୍ୟ ।)

ସୁମ ।—ଦ୍ୱାରି !—

ନେପଥ୍ୟେ ।—ଅବଧାନ !

[ ଦ୍ୱାରିର ପ୍ରବେଶ ।

ସୁମ ।—ନର୍ତ୍ତକୀମାନଙ୍କୁ ସଭାସ୍ଥଳକୁ ଆସିବାକୁ କହିଦିଅ ।

ଦ୍ୱାରି ।—ଯେ ଆଜ୍ଞା ।—( ପ୍ରସ୍ଥାନ । )

[ ନର୍ତ୍ତକୀବୃନ୍ଦ ଓ ତଯ୍ୟଙ୍ଗୀବର୍ଗଙ୍କର ପ୍ରବେଶ ଓ ଯଥାବିଧି ମହାରାଜଙ୍କୁ ସମ୍ମାନ ପ୍ରଦର୍ଶନ ପୂର୍ବକ ଉପବେଶନ ।

ବିଦୂ ।—( ଚତୁର୍ଦ୍ଦିଗ ନିରୀକ୍ଷଣ । )

ରାଜା ।—ବୟସ୍ୟ ! ଏମନ୍ତ ସ୍ଥିରଆଖିରେ ଏତେ ଅନାଉଛ କାହିଁକି ?

ବିଦୂ ।—ମହାରାଜ ! ଏ ସଭାଘରର ଉଜ୍ଜ୍ୱଳତା ଦ୍ୱିଗୁଣ ହୋଇ ଯିବାରୁ ମୁଁ ତଟସ୍ଥ ହୋଇ ଚାରିଆଡ଼କୁ ଅନାଉଥିଲି କାରଣଟା କଣ ! ମାତ୍ର ଦେଖିଲି ଯେ

ଶ୍ୟାଂ ନ ହୋଇ ତହିଁରୁ ଛଣା ହୋଇ ଆସିଥିବା ଦିବ୍ୟଦେହଳସମ୍ପନ୍ନା ଦିବ୍ୟାଭରଣଭୂଷିତା ପରିଧୂପିତଦିବ୍ୟାମ୍ବରପରିଧାରିଣୀ ଦିବ୍ୟୋପପାଦୁକା-ପରିଶୋଭିଣୀ ଦିବ୍ୟରଥାବରୋହଣୀ ରମଣୀମଣି ସମୁପସ୍ଥିତା—ସେସ୍ଥଳେ ଉତ୍ଫୁଲ୍ଲତା ବୃଦ୍ଧି ନ ହେବ କାହିଁକି ?

ରାଜା ।—( ସହାସ୍ୟେ ) ଓହୋ ! ମାତ୍ର ବ୍ରାହ୍ମଣୀ ହୋଇଥିଲେ ଏଥିର ଚତୁର୍ଗୁଣ ହୋଇଥାନ୍ତା ।

ବିଦୂ ।—ତା ମିଛ ନୁହେଁ । ହାଃ ! ହାଃ ! ହାଃ !

ସୁମ ।—ତୁମ୍ଭେମାନେ ଆରମ୍ଭ କର ।

[ ନର୍ତ୍ତକୀମାନଙ୍କ ନୃତ୍ୟଗୀତ ଓ ତହାଁରେ ବିଦୂଷକଙ୍କର ନାନାଦି ଅଙ୍ଗଭଙ୍ଗୀ ଓ ବାହାବା ଇତ୍ୟାଦି ଶବ୍ଦକରଣ ।

ନର୍ତ୍ତକୀବୃନ୍ଦ ।—( ନୃତ୍ୟାନ୍ତେ ! )

ଗୀତ ।

ରାଗିଣୀ ଇମନ—ତାଳ କାଓ୍ୱାଲି ।

ହେ ଦେଖିଛ ଏ ଶୋଭା କି କେବେ ନଜରେ ।
ଇନ୍ଦ୍ରଲୋକ ଶୋଭା ଲୁଚି ଯିବ ଯିବ ଡରରେ । ଘୋଷା ।
ଜଗପାଶ-ଲୁପାବଳେ ସୌଭାଗ୍ୟ ଘଟେ ଏ ପୁରେ—
କେନ୍ଦ୍ର ସମପରି ଭାଳୁ ମସ୍ତରେ ।
ତ୍ରିଭୁବନ ଶୋଭା ଦେଖ ଖେଳଇ ଏଠାରେ ନଗରେ । ୧ ।

ବିଦୂ ।—ବାଃ ! ବାଃ ! ଅତି ଉତ୍ତମ ଗୀତ ହେଲା ! ମହାରାଜ ! ଦୁର୍ଗମ-ଗିରିସମ୍ଭୂତା କଳକଳନାଦିନୀ ନିର୍ଝରିଣୀର ସୁଭମନୋହାରିଣୀ ବାଣୀ ଶୁଣି ଉତ୍ଫୁଲ୍ଲିତ ମନରେ ବନଗିରି ଭେଦ କରି ଆସି ତଳେ ପାଣି ପିଇଲେ କି ମନର ଆଶା ମେଣ୍ଟି ଯାଏ ?

ରାଜା ।—ତା କାହିଁକି ହେବ—ଆଉ ତଳେ ପିଇବ ।

ବିଦୂ ।—ଯଥାର୍ଥ ଆଜ୍ଞା ହୋଇଛନ୍ତି ମହାରାଜ ! ( ନର୍ତ୍ତକୀଙ୍କ ଅଗ୍ରକୁ ) ଆଉ ଗୋଟିଏ ସୁମଧୁର ଗୀତ ସୁଧାକଣ୍ଠରୁ ବହିଷ୍କୃତ କରି ସଭାସ୍ଥଳକୁ ମତାଇ-ଦିଅ ।

ନର୍ତ୍ତକୀବୃନ୍ଦ ।—( ଗୀତ । )

ରାଗିଣୀ ଝିଞ୍ଜିଟ—ତାଳ ଖେମଟା ।

ରାମ କେବେ ଲଭିବେ ବଳ ହେବେ ଫେରେ ଅଭ ।
ଯେ ସୁଯୋଗେ ଧରାଧାମେ ସ୍ୱର୍ଗ-ସୁଖ ପାଇ । ଘୋଷା ।
ନିଷ୍କାମ ଧର୍ମ ଆଚରି    ଭୋଗ ସୁଖ ଦୂର କରି
ସମର୍ପିବେ ରାଜା ରାଜ୍ୟ ସୁତେ ମହାବାହୁ । ୧ ।
ରାଜା ହେବେ ରାମଚନ୍ଦ୍ର,    ଜଣି କେବେ ଇନ୍ଦ୍ର, ଚନ୍ଦ୍ର,
ତାଙ୍କୁ ବଳ ରାଜା ଆଉ ପାଇବୁରେ କାହୁଁ । ୨ ।

ବଟୁ ।— ବାହବା ବାହବା ! ଗରିବ ବ୍ରାହ୍ମଣ ହେଲେ କ ମନ ଗରିବ ହେବ ? ମହାରାଜ ପଣି ହେଲେ ଆମେଇ ରାଣି ହେବା— ( ଅଣ୍ଟାରୁ ବାହାର କରି ପଞ୍ଚ ସ୍ୱର୍ଣ୍ଣମୁଦ୍ରା ନିକ୍ଷେପ । )

ରାଜା ।—ମନ୍ତ୍ରି ଚଳ । ବର୍ତ୍ତମାନ ରାତ୍ରି ଅଧିକ ହୋଇଗଲା—ସଭା ଭଙ୍ଗ କର ।

ଯବନିକା ପତନ ।

---

( ନେପଥ୍ୟେ ଗୀତ । )

ରାଗିଣୀ ଖମ୍ବାଜ—ତାଳ ଆଡ଼ାଖେମଟା ।

ଗାଅ ସମସ୍ୱରେ ସର୍ବେ ରଘୁନାଥ ଯଶୋଗାନ ।
ସିଂହାସନ ଶୋଭା ପ୍ରଜା ପାଇବେ ଯେ ପ୍ରାଣପଣ । ଘୋଷା ।
ପୂର୍ଣ୍ଣଚନ୍ଦ୍ରନିର୍ବିଶେଷ କରି    ପ୍ରଜା ଦୁଃଖାନ୍ଧକାର ହରି,
ହରିବେ ପୃଥ୍ୱୀଙ୍କାର ତେଜେ ସୂର୍ଯ୍ୟ ହେବେ ମ୍ଳାନ । ୧ ।
ଗାଅ ନର ନାରୀ ମିଳି    ଗାଅ ହୋଇ କୁତୂହଳୀ,
ରାମନାମେ ଭବଧାମେ ପାଇବ ରେ ପରିତ୍ରାଣ । ୨ ।

---

# ତୃତୀୟ ଅଭିନୟ ।

ପ୍ରଥମ ଦୃଶ୍ୟ—କୈକେୟୀର ଶୟନାଗାର ।

[ ପର୍ଯ୍ୟଙ୍କୋପରି କୈକେୟୀ ଶୟାନା । ମନ୍ଥରାର ଦ୍ରୁତ ପ୍ରବେଶ । ]

ମନ୍ଥରା ।—ମଲି ! ମୁଁ ମୈରଣୀ, ମୋପରେ ପଡ଼ିଶେ ନେଉଁ ମୈରଣୀ ।—ହେଦ ! ହେଦ ! ପାଣି ଅସି ପରେ ଅଧିବ ହେଲାଣି ତୁମେ ଶୋଇ ରହିଛ ? ଏତେ ରୁଠିବସ । ତୁମର କଙ୍କାଳ ପଡ଼ୁଅଛି । ତୁମର ସ୍ୱାମୀ ଇଚ୍ଛା କଲ୍ୟାଣି

ଦେଖାଯାନ୍ତି ମାତ୍ର ସେ ଯଥାର୍ଥ ଅବସ୍ଥା ଜାଣୁନ୍ତି । ତୁମେ ତାଙ୍କୁ ପ୍ରିୟ
ମନେ କରି ସୁହାଗର ଗର୍ବ କର ? ତୁମର ସେ ସୁହାଗ ଖରାଦିନର ନଈସୁଅ
ପରି ତୁଟିଲା । ତୁମକୁ ଯେ ଚୁରିଆଡ଼ୁ ଦୁଃଖ ଘୋଟି ଆସିଲାଣି ଏହା
ତୁମେ ଆଉ କେବେ ବୁଝିବ ?

କୈକେୟୀ ।—( ଅତ୍ୟନ୍ତ ବ୍ୟସ୍ତଭାବରେ ) ମନ୍ଥରେ ! ତୁମକୁ ନିତାନ୍ତ ଦୁଃଖିତା
ଓ ତୁମର ମୁହଁ ନିତାନ୍ତ ବିବର୍ଣ୍ଣ ଦେଖାଯାଉଛି ନାହିଁକି ?—ମୋର ତ କିଛି
ଅମଙ୍ଗଳ ଘଟି ନାହିଁ ?

ମନ୍ଥରା ।—( ନିତାନ୍ତ ବିଷଣ୍ଣଭାବରେ ) ଦେବ ! ତୁମର ଅକ୍ଷୟ ସୌଭାଗ୍ୟ ନଷ୍ଟ
ହେବାର କାଣ୍ଡ ଉପସ୍ଥିତ । ରଜା ଦଶରଥ ରାମକୁ ଯୌବରାଜ୍ୟରେ
ଅଭିଷେକ କରିବେ, ଏଇଥିପାଇଁ ଦୁଃଖ ଆଉ ଶୋକାନଳରେ ପଡ଼ି ଜଳିମରି
ରହିଛି । ତୁମର ଦୁଃଖରେ ମୋର ଦୁଃଖ, ତୁମର ସୁଖରେ ମୋର ସୁଖ ।
ମୁଁ ନିଆଁରେ ପୋଡ଼ି ହେଲାପରି ହୋଇ ତୁମକୁ ହିତ କହିବା ପାଇଁ ଏଠାକୁ
ଆସିଛି । ଦେବ ! ତୁମେ ରାଜକୁଳରେ ଜନ୍ମିଛ, ରଜାର ରାଣୀ ହୋଇଛ,
ତେବେ ନାହିଁକି ରାଜଧର୍ମର ଉଗ୍ରଭାବ ବୁଝିପାରୁ ନାହିଁ ? ତୁମର ଗେରସ୍ତ
କଥାରେ ଧାର୍ମିକ, ଫଳରେ ଠକ । ସେ ମୁହଁରେ ମିଠାକଥା କହନ୍ତି, ତାଙ୍କର
ସ୍ୱଭାବ କଠୋର । ତୁମେ ତାଙ୍କୁ ନିର୍ମଳସ୍ୱଭାବର ଲୋକ ବୋଲି ଜାଣି
ଆପେ ଆପେ ଠକିହୁଅ । ତୁମକୁ ରଜା ଖାଲି କଥାରେ କେବଳ ମିଠାକଥା
କହନ୍ତି ଆଉ କୌଶଲ୍ୟାକୁ ରାଜ୍ୟ ଦେବାକୁ ଯାଉଛନ୍ତି !—ମୁହଁ ମରୁ-
ଥାଏ ତୋହରି ପାଇଁ—ତୋହର ଦଶା କିଏ ନାହିଁ ! ତୁମର ଗେରସ୍ତ
ଭରତକୁ ବନ୍ଧୁଘରକୁ ପଠେଇ ଦେଇ କାଲି ରାମକୁ ନିଷ୍କଣ୍ଟକରାଜ୍ୟରେ
ଅଭିଷେକ କରିବେ । ତୁମେ ବିଷମଣି—ସାପପରି ହିଂସ୍ରକ ଶତ୍ରୁକୁ
ପତିବୋଲି ମଣି ଅଙ୍ଗରେ ଧରିଛ । ଭଗାରି ଆଉ ସାପ ଉପେକ୍ଷିତ ହୋଇ
ଯେପରି ବେଭାର କରନ୍ତି ରଜା ଦଶରଥ ବର୍ତ୍ତମାନ ତୁମର ପୁଅ ଆଉ
ତୁମପ୍ରତି ସେହିପରି ବେଭାର କରିଛନ୍ତି । ତୁମେ ସବୁବେଳେ ସୁଖସମ୍ଭୋ-
ଗରେ ମାତିଥାଅ—ସ୍ତ୍ରୀ ସବୁ ନାହିଁକି ବୁଝିବ ?—ଏଣେ ତୁଚ୍ଛା ମିଠାକଥା
କହି ତେଣେ ରଜା କାଲି ରାମକୁ ଯୌବରାଜ୍ୟରେ ସ୍ଥାପନ କରିବେ—
ତୁମର ଆଉ ତୁମର ଆପଣାର ଲୋକମାନଙ୍କ କଥା ସାରି ଦେଇଛନ୍ତି—କ
ଆଉ ରହିଛନ୍ତି ? ଦେଖୁଛ କଣ, ଯାହା କରିଥିବ ଏବେବେଳେ । ତୁମେ
ଶୀଘ୍ର ଶୀଘ୍ର ଆପଣାର କଲ୍ୟାଣ ଉପାୟ—ଆପଣାକୁ, ଭରତକୁ ଆଉ
ମୋତେ ରକ୍ଷା କର ।

କୈକେ ।—( ଉଠି ବସି ହର୍ଷ ବିସ୍ମୟସ୍ୱରରେ ) ମନ୍ଥରେ ! ତୁମେ ସ୍ୱା ଜାଣିଲ କହର ?

ମନ୍ଥ ।—ମୁଁ କୋଠା ଉପରକୁ ଯାଇ ଦେଖିଲି—ଅଯୋଧ୍ୟାର ସବୁ ରାଜଦାଣ୍ଡରେ ପାଣି ଛିଞ୍ଚା ହେଉଛି ଆଉ ଧଳା ନୀଳା ପଦ୍ମଦଳରେ ଘର ହୋଇଯାଇଛି । ଛୋଟ ବଡ଼ ନାନାରଙ୍ଗ ବାନାରେ ନଗରର ଭାରି ଶୋଭା ହୋଇଛି । ଲୋକମାନେ ସ୍ନାନ କରି ଚନ୍ଦନ ନାଇ ଖୁସି ହୋଇ ବୁଲୁଛନ୍ତି । ବ୍ରାହ୍ମଣମାନେ ମାଳ ଆଉ ମେଦଳ ନେଇ ମନ୍ତ୍ର ପଢ଼ୁଛନ୍ତି ଆଉ ବାଇଦବାଜଣାରେ ଘରଆଗ କମ୍ପିଯାଉଛି । ଠାକୁରମନ୍ଦିର-ଦୁଆରସବୁ ସୁଧା କଳସରେ ଧଳା ହୋଇଯାଇଛି । ମହୀଶ ରାହିଙ୍କ ହାତୀ, ଘୋଡ଼ା, ଗାଈ, ଷଣ୍ଢ ଏମାନେ ସୁନା ଖୁସି ହୋଇ ଡାକ ପକାଉଛନ୍ତି ଆଉ ଡମ୍ଫ ସଙ୍ଗେ ବେଦଧ୍ୱନି ମିଳି ନଗର କମ୍ପାଇ ଦଉଛି । ରାମର ମା କୌଶଲ୍ୟା ଭାରି ଖୁସି ହୋଇ ପାଣିପରି ଧନ ବୋହି ଦଉଛି । ରାମର ଧାଈ ପାଉଁଶିଆରଙ୍ଗର ପାଟଲୁଗା ପିନ୍ଧି ବଡ଼ ଖୁସି ହୋଇ ଥିଲା କୋଠାରୁ ଯାଉଥିବାବେଳେ ମୁଁ ପଚାରିବାରେ କହିଲା ଯେ ମହାରାଜା କାଲି ପୁଷ୍ୟାଯୋଗରେ ରାମଙ୍କୁ ଯୌବରାଜ୍ୟରେ ଅଭିଷେକ କରିବେ ।

କୈକେ ।—( ଅତ୍ୟନ୍ତ ହୃଷ୍ଟଭାବେ ) ମନ୍ଥରେ ! ଏ ଶୁଭସମ୍ବାଦ ମୁଁ ଏବଯାଏ ଶୁଣି ନାହିଁ । ତୁମେ ମୋତେ ଏହି ପରମ ଶୁଭବାର୍ତ୍ତା ଦେଲ ଏଥିସକାଶେ ତୁମକୁ ଅଧିକ ସନ୍ତୁଷ୍ଟ କରିବାକୁ ମୋର ମନ ବଳୁଛି । ମୁଁ ରାମ ଆଉ ଭରତଙ୍କୁ ଅନ୍ତର କରି ନ ଜାଣେ । ରାଜା ଦଶରଥ ଯେ ରାମଙ୍କୁ ଯୌବରାଜ୍ୟରେ ଅଭିଷେକ କରିବେ ଏଥିରେ ମୁଁ ସନ୍ତୋଷ ଲାଭ କଲି । ତୁମେ ଯେ ଅମୃତପ୍ରାୟ ବାର୍ତ୍ତା ମୋତେ ଜଣାଇଲ ତହୁଁ ବଳି ମୋର ଆଉ କଣ ପ୍ରିୟ ହୋଇ ନ ପାରେ । ତେଣୁ ତୁମକୁ ପ୍ରିୟ ପୁରସ୍କାର ଦେବା ଉଚିତ । ତୁମେ ଯାହା ପ୍ରାର୍ଥନା କରିବ ମୁଁ ତାହା ଦେବି—ବର୍ତ୍ତମାନ ଏ ହାର ନିଅ । ( ଗଳାରୁ ହାର ଖୋଲି ପ୍ରଦାନ । )

ମନ୍ଥ ।—( କ୍ରୋଧେ କମ୍ପୁ କମ୍ପୁ ଦୂରକୁ ହାର ଫୋପାଡ଼ି ଦେଇ ) ମୁଁ ଜାଣୁଥାଏ ନାନୀ ପାଇଁ—ନାନୀ ଆଖିରେ ଲୁହ ଝୋପାଏ ନାହିଁ ! ମଲା—ତୁମର କଡ଼ାଏ ହେଲେ ବୁଦ୍ଧି ନାହିଁ ? ଏଡ଼େ ଅଯୋଗ୍ୟ ବିଷୟରେ ତୁମର କରୁଣ ଆନନ୍ଦ ଜାତ ହେଲା ? ତୁମେ ଯେ ଶୋକସାଗରରେ ବୁଡ଼ିବାକୁ ବସିଲଣି ଏହା କ ବୁଝି ପାରୁ ନାହିଁ । ମୁଁ ଦୁଃଖ କରିବି ନା ତୁମକଥା ମନେ କରି ମନେ ହସ ମାଡ଼ୁଛି । ତୁମକୁ ଘୋର ଦୁଃଖ ଆସି ଘୋଟୁଛି—ଶୋକ

କରିବ ନା ତୁମେ ଅଜନ୍ଦରେ ଭୋଳ ହୋଇଯାଉଛ ! କଉଁ ବୁଦ୍ଧିମତୀ ନାରୀ
ନାଳିପରି ବଗାରି ସଉତୁଣୀ-ପୁଅର ବୃଦ୍ଧି ଦେଖି ଖୁସି ହୁଏ ?—କହନ୍ତୁ,
ନା ମୁଠା କଇ ବା ମୁଠା କଇ ତା ବ ମୁଠାରେ ରହିବ—ସାତଥର କର
ବୁଝାଇ କହିଲେ ପର କି ଆପଣା ହୋଇବ ! ତୁମର କଷ୍ଟେ ଦୁର୍ମତି
ହେଉଛି । ଏଥିପାଇଁ ମୋର ବଡ଼ ଭାବନା । ରାମର ଯେପରି ରାଜ୍ୟରେ
ଅଧିକାର ଅଛି ଭରତର ମଧ୍ୟ ସେହିପରି ଅଧିକାର ଅଛି । ତେଣୁ ଭରତ
ଠାରୁ ରାମର ଭୟର ସମ୍ଭାବନା ! ମୁଁ ବର୍ଣ୍ଣ ହେଉ ନାହିଁ କ ବୁଝିବ ;—
ଯେ ଯାହାକୁ ଡରେ ସେ ତାହାକୁ ପାରୁପର୍ଯ୍ୟନ୍ତ ବିନାଶ କରିବାକୁ ଯତ୍ନ
କରେ । ଦେଖ ! ଲକ୍ଷ୍ମଣ ରାମର ଭାରି ଅନୁଗତ । ଲକ୍ଷ୍ମଣଠାରୁ ରାମର
ଭୟ ନାହିଁ । ଲକ୍ଷ୍ମଣ ଯେପରି ରାମର ଅନୁଗତ ଶତ୍ରୁଘ୍ନ ବି ସେହିପରି
ଭରତର ଅନୁଗତ । ଏଣୁ ଶତ୍ରୁଘ୍ନଠାରୁ ରାମର ଅଲଗା ଭୟ ନାହିଁ—
ଭରତକୁ ବିନାଶ କଲେ, ସେ ଭୟ ନଷ୍ଟ ହେବ । ପୁଣି ଲକ୍ଷ୍ମଣ ଆଉ
ଶତ୍ରୁଘ୍ନ କନିଷ୍ଠ ହେବାହେତୁ ସେମାନଙ୍କର ରାଜ୍ୟରେ ଅଧିକାର ନାହିଁ ।
ଭରତ ମଧ୍ୟମ ଥିବାରୁ କ୍ରମ ଅନୁସାରେ ତାହାର ରାଜ୍ୟରେ ଅଧିକାର ଅଛି;
ଏଣୁ ଭରତ ଛଡ଼ା ଆଉ କେଉଁ ଭାଇଠୁଁ ରାମର ଡର ନାହିଁ । ରାମ ଏତେ
ବିଦ୍ୱାନ୍ ନହିଁରେ ପୁଣି ଋଷିମୁନିମାନଙ୍କ ଆଶ୍ରମରେ ଯୋଗ୍ୟତା ଲଭିଛି,
ବିଶେଷ କର୍ତ୍ତବ୍ୟକାର୍ଯ୍ୟ ଆଗେ କରିବାକୁ ଶିକ୍ଷିତ । ସେ ନିଜକୁ ବଞ୍ଚା-
ଇବାପାଇଁ ଅବଶ୍ୟ ଭରତର ଅନିଷ୍ଟ କରିବ । ଏହା ଚିନ୍ତା କରି ମୁଁ ଭୟରେ
କମ୍ପିଯାଉଛି । କୌଶଲ୍ୟା ଭଳି ସୌଭାଗ୍ୟବତୀ ଯେ ତାର ପୁଅ କାଲି
ପୁଷ୍ୟାଯୋଗରେ ଦ୍ୱିଜବରମାନଙ୍କ କର୍ତ୍ତୃକ ମହତ ଯୌବରାଜ୍ୟରେ ଅଭି-
ଷିକ୍ତ ହେବ । କୌଶଲ୍ୟା ରାଜ୍ୟ ଆଉ ପ୍ରୀତି ଲାଭ କରିବାରୁ ତାର ନାମ
ଶତ୍ରୁଆଡ଼କୁ ବାହାରିଯିବ ଆଉ ତୁମେମାନେ ଏଣିକି ତା ସହିତରେ ସଉ-
ତୁଣୀ ପରି ବ୍ୟବହାର କରି ପାରିବ ନାହିଁ—ଅଧିକ କ ବୋଲିବ ତୁମକୁ-
ବ ଦାସୀପରି ହାତଯୋଡ଼ି ତାର ଭୁସ୍ତି ସାଧିବାକୁ ପଡ଼ିବ । ଏଣିକି ଆମମାନଙ୍କ
ସଙ୍ଗେ ତୁମେ ବି ତାର ଦାସୀ ହେବ ଆଉ ତୁମର ପୁଅ ରାମର ଗୋଲାମ
ହେବ । ରାମର ଭାର୍ଯ୍ୟା ଦାସୀମାନଙ୍କୁ ଦେଖି ପରମ ପ୍ରମୋଦ ଲାଭ କରିବ
ଆଉ ଭରତର ତେଜ ନ ଥିବାରୁ ତାର ଭାର୍ଯ୍ୟା ଦାସୀମାନଙ୍କ ସଙ୍ଗରେ
ଦୁଃଖ ପାଇବ ।

କୈକେୟୀ ।—କୁବୁଜେ ! ଜ୍ୟେଷ୍ଠରାଜକୁମାର ରାମ କୃତଜ୍ଞ, ଗୁଣବାନ, ଦାନ୍ତ,
ସତ୍ୟବାଦୀ, ପବିତ୍ରସ୍ୱଭାବ ଓ ଧର୍ମଜ୍ଞ ହୋଇଛନ୍ତି—ସେହି ଏକ

ଯୁବରାଜ ହେବାର ଉପଯୁକ୍ତ । ବିଶେଷତଃ ସେ ଦୀର୍ଘାୟୁ ହୋଇ ପିତା ପ୍ରାୟ
ଭ୍ରାତା ଓ ପ୍ରଜାମାନଙ୍କୁ ପ୍ରତିପାଳନ କରିବେ । ଏଣୁ ରାମାଭିଷେକ
ବାର୍ତ୍ତା ଶୁଣି କାହିଁକି ତୁମେ ସନ୍ତାପୀ ହେଉଛ ? ଭରତ ମଧ୍ୟ ଶତବର୍ଷ ପରେ
ପୈତୃକ ରାଜ୍ୟ ପାଇବ । ସ୍ୱର୍ଗ କଲ୍ୟାଣର ନିଦାନରୂପ ଏହି ଆନନ୍ଦକର
ବ୍ୟାପାର ଉପସ୍ଥିତ ହେବାରେ କାହିଁକି ତୁମେ କର୍ଣ୍ଣରେ ପୋଡ଼ା ହେଲା
ପରି ପ୍ରଳାପ କରୁଛ । ମନ୍ଥରେ ! ତୁମେ ଭରତଙ୍କୁ ଯେପରି ପ୍ରିୟ ବୋଧ
କରିଥାଅ ରଘୁନନ୍ଦନ ରାମଙ୍କୁ ତହୁଁ ବଳି ପ୍ରିୟ ବୋଧ କରିବ ଯେ ହେତୁ
ସେହି ରାମ କୌଶଲ୍ୟାଠାରୁ ମୋର ଅଧିକ ଶୁଶ୍ରୂଷା କରନ୍ତି । ରାମର ରାଜ୍ୟ
ହେଲେ ଭରତର କି ହେଲା—ରାମ ଯେ ଆପଣାପରି ଭାଇମାନଙ୍କୁ ପ୍ରିୟ
ବୋଧ କରନ୍ତି ।

ମନ୍ଥ ।—( ଦୀର୍ଘନିଶ୍ୱାସ ତ୍ୟାଗ କରି ) ହାୟ ! ମୁଁ ବୁଝାଇ କହିବ ଯାହାକୁ—ସେତ
କୁଆଡ଼େ କହୁଛ ତାହାକୁ !—ଦେବି ! ତୁମେ ଶୋକସାଗରରେ ବୁଡ଼ି କି
ମୂର୍ଖପରି ଅନର୍ଥକୁ ଅର୍ଥ ମଣି ଅପେ ଯେ ପାତାଳକୁ ଯାଉଛ ତାହା ଜାଣି-
ପାରୁ ନାହିଁ ? ରାମ ରଜା ହେବ, ତାର ପୁଅ ତା ପଛରୁ ରଜା ହେବ । ତେଣୁ
ଭରତ ଏକାବେଳକେ ରାଜବଂଶହୀନ ହେବ ।—ଦେବି ! କେହି ରଜା
ସକଳ ପୁତ୍ରଙ୍କୁ ରାଜ୍ୟରେ ସ୍ଥାପନ କରନ୍ତି ନାହିଁ । ସମସ୍ତେ ରାଜ୍ୟରେ
ସ୍ଥାପିତ ହେଲେ ଦୁର୍ନୀତି ବଢ଼ିବ । ଏଥି ଅପର ଗୁଣବାନ୍ ପୁଅ ଥାଉଁ
ରଜାମାନେ ବଡ଼ପୁଅ ମୂର୍ଖ ହେଲେ ବି ତାକୁ ରାଜ୍ୟ ଦିଅନ୍ତି ।—ତୁମର
ପୁଅ ରାଜ୍ୟହୀନ ହୋଇ ସମସ୍ତ ସୁଖରୁ ଭ୍ରଷ୍ଟ ହେବ । ଏଥିପାଇଁ ମୁଁ ତୁମକୁ
ଉପଦେଶ ଦେବାକୁ ଆସିଛି । ମାତ୍ର ଯା କହନ୍ତି—ବିନାଶକାଳେ ବିପରୀତ
ବୁଦ୍ଧି—ସେହିପରି ମୁଁ ହିତ କରୁଛି ବୋଲି ତୁମେ ବୁଝି ପାରିଲ ନାହିଁ ।
ସପତ୍ନୀର ବୃଦ୍ଧି ଶୁଣି ମୋତେ ପୁରସ୍କାର ଦେଲ । ଛି ଛି ! ରାମ ନିଷ୍କଣ୍ଟକ—
ରାଜ୍ୟ ଲାଭ କରି ନିଶ୍ଚୟ ଭରତଙ୍କୁ ମାରି ପକାଇବ କାହିଁତ ବନକୁ ପଠେଇ
ଦେବ ।—ନିକଟରେ ଥିଲେ ଗଛମାନଙ୍କ ଉପ୍ରତି ବି ଶରଧା ହୁଏ । ଭରତ
ଏଠାରେ ଥିଲେ ଏମିତି ହୋଇଥାନ୍ତା କି ? ତୁମେ ପିଲାଦିନରୁ ଭରତକୁ
ମାମୁଘରକୁ ପଠେଇ ଦେଇଛ । ସେ ଏଠି ଥିଲେ ଏପରି କେବେ ହୋଇ
ନ ଥାନ୍ତା । କଣ୍ଟାବଣ ଭିତରେ ଥିଲେ ଦାମିକଭଳି ଗଛ ବି କାଟୁରିଆଙ୍କୁ
ମିଳେ ନାହିଁ । ରାମ ଲକ୍ଷ୍ମଣଙ୍କୁ ରକ୍ଷା କରିବ ଲକ୍ଷ୍ମଣ ରାମକୁ ରକ୍ଷା କରିବ ।
ଅଶ୍ୱିନୀକୁମାରଙ୍କ ପରି ସେମାନଙ୍କର ସ୍ନେହ ହୋଇଛି ତେଣୁ ଲକ୍ଷ୍ମଣପ୍ରତି
ରାମର ଅପାକରଣ କରିବାର ସମ୍ଭାବନା ନାହିଁ । ମାତ୍ର ଭରତପ୍ରତି ଯେ

ସେ ପାପାଚରଣ କରିବ ଏଥିରେ ଆଉ ସନ୍ଦେହ କଣ ? ମୋ ବିବେଚ-
ନାରେ ରଘୁନନ୍ଦନ ରାମ ରାଜଗୃହରୁ ବନକୁ ଯାଉ । ତାହାହେଲେ ତୁମର
ମଙ୍ଗଳ ହେବ । ବାପାଙ୍କ ଆଦେଶରେ ଯେବେ ଭରତ ରାଜ୍ୟ ପାଏ
ତେବେ ତୁମର ବାନ୍ଧବମାନଙ୍କର କଲ୍ୟାଣ ହେବ ନୋହିଲେ ତୁମର
ମଙ୍ଗଳ ନାହିଁ । ତୁମର ପୁଅ ଭରତ ରାମର ଭଗାରି—ରାମର ସମ୍ପଦ
ହେଲେ ଭରତ ସମ୍ପତ୍ତିହୀନ ହୋଇ ତାଙ୍କ ବଶରେ ଥାଇ କପରି ବଞ୍ଚିବ
ବୁଝ ! ବଣରେ ବଡ଼ ଦନ୍ତାହାତୀ ପଛରେ ଯେପରି ସିଂହ ଗୋଡ଼ାଉଥାଏ
ସେହିପରି ରାମ ଭରତଙ୍କୁ ଗୋଡ଼ାଉଛି—ତୁମେ ତାଙ୍କୁ ରକ୍ଷା ନ କଲେ
ଆଉ ଉପାୟ ନାହିଁ । କହନ୍ତି ପରା—ମୂଳିଆ ଛାଡ଼ିଲେ ବଳେ—ଚଷା
ଛାଡ଼ିଲେ ନରକେ । ଆଗେ ତୁମେ ସୌଭାଗ୍ୟଗର୍ବରେ ଆପଣା ସଉତୁଣୀ
ରାମର ମାଆ କୌଶଲ୍ୟାକୁ ହଟେଇ ଦେଇଥିଲ—ସେ କଷ୍ଟ ଦାଉ ସାଧିବାକୁ
ବସିଛି । ରାମ ଯେବେ ରତ୍ନମୟୀ ପୃଥିବୀ ଲାଭ କଲା ତୁମେ ଭିକ ମାଗି
ପୁଅସଙ୍ଗେ ପଞ୍ଚିବ ପାଇବ । ଯେବେ ରାମ ରାଜ୍ୟ ପାଇଲା ତେବେ
ଭରତର କଥା ସହଜ ନା ରହିଲା ? ତୁମର ପୁଅ କପରି ରାଜ୍ୟ ପାଏ
ଆଉ ରାମ କପରି ବନକୁ ଯାଏ ତାହାର ଉପାୟ ଚିନ୍ତା କର ।—ପରଧ-
ନରେ ନୃପ ହଲ୍ଲଇ—ଛାଳର ମାଛି କେବେ ଛଡ଼ାଇ—ଏ ସିଧାକଥା ।

କେକେ ।—( କ୍ରୋଧଭରେ ସଜାଡ଼ି ହୋଇ ବସି ) କୁବ୍ଜେ ! ତୁମେ ଯଥାର୍ଥ
କହିଛ । ଏତେ କଥା ଅଛି ମୁଁ ବୁଝିପାରି ନ ଥିଲି । ମୁଁ ଏଡ଼ିକି ଭୋଳି !
ଅଜ ମୁଁ ରାମକୁ ବନକୁ ପଠାଇବି ! ଆଜ ମୁଁ ଭରତକୁ ଯୌବରାଜ୍ୟରେ
ଅଭିଷେକ କରାଇବି । ଯେ ଉପାୟରେ ରାମ କୌଣସିମତେ ରାଜ୍ୟଲାଭ
ନ କରେ ଆଉ ଭରତ ରାଜ୍ୟ ପାଏ ବର୍ତ୍ତମାନ ତୁମେ ସେହି ଉପାୟ
ପାଶ-ରଜା ଖେଳରେ ଖେଳରେ ମୋତେ ଉପଦେଇଦେବାକୁ ବସିଛନ୍ତି !

ମନ୍ଥ ।—ହଁ ଏବେ ବାଟକୁ ଆସିଲ । କହନ୍ତି ପରା—ସାହସେ ମଉ, ସାହସେ ଭଲ,
ସାହସେ ଘର ଦୁଆର କର ! ଖାଲି ସାହସ ଚାହିଁ । ଦେଖ ! ଯେ
ଉପାୟରେ ତୁମର ପୁଅ ଭରତ ଏକା ରାଜ୍ୟଲାଭ କରିପାରିବ ମୁଁ ତାହା
କହିଦେଉଛି ଶୁଣ ।—ନାହିଁ କି ? ତୁମର କଣ ମନେ ନାହିଁ ଯେ ମୋଠୁ
ଶୁଣିବ ? ତୁମର କଷ୍ଟେ ମନେ ଅଛି—ମୋତେ କହିବା ପାଇଁ ଲୁଚେଇଛ ।

କେକେ ।—( ଶଯ୍ୟାରୁ କହିହି ଉଠି ) ମନ୍ଥରେ ! ତୁମେ ଆଉ ମୋତେ ସେପ
କଥା କହିବ ନାହିଁ । ଯେ ଉପାୟରେ ରାମ କୌଣସିମତେ ରାଜ